# ମାନସିକ ବିକୃତି




ଉତ୍କଳ ବିଶ୍ୱବିଦ୍ୟାଳୟ

# ମାନସିକ ବିକୃତି

( Mental Abnormality )

ପ୍ରଣେତା—
ଶ୍ରୀ ଲକ୍ଷ୍ମଣ ମିଶ୍ର, B. A., Dip-Ed.

ପ୍ରଥମ ସଂସ୍କରଣ

ପ୍ରକାଶକ—
ଉତ୍କଳ ବିଶ୍ୱବିଦ୍ୟାଳୟ
କଟକ
୧୯୫୪

ମୂଲ୍ୟ ଟ ୧୷ (ଏକଟଙ୍କା ବାରଅଣା)

# ସୂଚିପତ୍ର

---

# ମାନସିକ ବିକୃତି

## ପ୍ରଥମ ପରିଚ୍ଛେଦ

### ମାନସିକ ବିକୃତିର ବ୍ୟାଖ୍ୟା

ମନୁଷ୍ୟ ଯେଉଁ ଆଚରଣ ବା କାର୍ଯ୍ୟ କରିବା ଦ୍ୱାରା ନିଜର କ୍ଷତି କରେ ତାହାକୁ ବିକୃତ ଆଚରଣ କୁହାଯାଏ । ଦୃଷ୍ଟାନ୍ତ ସ୍ୱରୂପ ଯଦି ଗୋପାଳ ରାଗିଯାଇ ଦୟାନିଧିକୁ ବାଧାଏ ମାରିଲା, ଏହି ବାଧା ମାରିବା ଦ୍ୱାରା ଯେ ଦୟାନିଧିର କେବଳ କଷ୍ଟ ହେଲା ତାହା ନୁହେଁ । ଗୋପାଳ ରାଗିଯିବା ଫଳରେ ତାହାର ଶରୀରରେ ଟକ୍‌ସିନ (toxin) ନାମକ ବିଷର ସଞ୍ଚାର ହେଲା । ଏହି ଟକ୍‌ସିନ ବିଷର ସଞ୍ଚାର ଫଳରେ ଗୋପାଳର ପରିପାକକ୍ରିୟା ଓ ରକ୍ତସଞ୍ଚାଳନାଦିରେ ବ୍ୟାଘାତ ଘଟିଲା । ଏଣୁ ଗୋପାଳର ରାଗିଯିବାଟା ତାହାରି ମଧ୍ୟ କ୍ଷତି କଲା । ମନୁଷ୍ୟ ଯେ ଅନ୍ୟକୁ ପୀଡ଼ା ଦିଏ, ଅନ୍ୟକୁ ହତ୍ୟା କରେ, ଅନ୍ୟର ଗୃହରେ ଅଗ୍ନିସଂଯୋଗ କରେ, ଏହାଦ୍ୱାରା ସେ ଅନ୍ୟର ଯେତେ ଅନିଷ୍ଟ ନ କରେ, ତାଠୁଁ ବଳି କ୍ଷତି କରେ ନିଜର । ଏଣୁ ମନୁଷ୍ୟ କ୍ରୋଧ ହେତୁ ଅନେକ ବିକୃତ ଆଚରଣ ପ୍ରକାଶ କରେ, ଯାହାଦ୍ୱାରା କି ସେ ନିଜର ଓ ସମାଜର କ୍ଷତି କରେ । ମନୁଷ୍ୟ ଭୟ ହେତୁରୁ ମଧ୍ୟ ଯେଉଁ ଆଚରଣ ବା କ୍ରିୟା ପ୍ରକାଶ କରେ, ତାହା ମଧ୍ୟ ବିକୃତ; କାରଣ କ୍ରୋଧ ପରି ଭୟରୁ

ମଧ୍ୟ ଟକ୍‌ସିନ ବିଷର ସଞ୍ଚାର ହୋଇ ଶାରୀରିକ ଅନିଷ୍ଟ ଘଟାଏ । ଅନେକ ଲୋକ ରାତିରେ ଭୟ କରି ଉତ୍‌ପରଦନ ଝାଡ଼ା ବାନ୍ତି ରୋଗରେ ମରି ଯାଇଥିବାର ଦେଖା ଯାଇଛନ୍ତି । ବର୍ତ୍ତମାନ ଗୋପାଳ ତାହାର କ୍ରୋଧହେତୁ ଦୟାନିଧିକୁ ବିଧାଏ ମାରିଲ; ରାମ ରାତିରେ ଯାଉଁ ଯାଉଁ ଭୟରୁ ଚିତ୍କାର କଲା । ବିଧାଏ ମାରିବା ହେଉଛି ଗୋପାଳର ବିକୃତ ଆଚରଣ ଏବଂ ଚିତ୍କାର କରିବା ହେଉଛି ରାମର ବିକୃତ ଆଚରଣ । ମାନ କ୍ରୋଧ ଏବଂ ଭୟକୁ ବିକୃତି କୁହାଯାଏ । ଶରୀରର କୌଣସି ଅଙ୍ଗ ବିକଳାଙ୍ଗ ହୋଇଗଲେ ଏହି ବିକଳାଙ୍ଗ ଅବସ୍ଥାକୁ ଶାରୀରିକ ବିକୃତି କୁହାଯାଏ । ବସନ୍ତ ରୋଗରୁ ଗୋପାଳର ଗୋଟିଏ ଚକ୍ଷୁ ନଷ୍ଟ ହେଲେ କୁହାଯିବ ଯେ ଗୋପାଳର ଶାରୀରିକ ବିକୃତି ଘଟିଛି । ମାନ କ୍ରୋଧ ବା ଭୟ ଶାରୀରିକ ବିକୃତି ନୁହେଁ; ଏହା ମାନସିକ ବିକୃତି ବା ମନର ବିକଳାଙ୍ଗ ଅବସ୍ଥା ।

ଶାରୀରିକ ବ୍ୟାଧିର ଫଳମାନଙ୍କୁ ମଧ୍ୟ ଶାରୀରିକ ବିକୃତି କୁହାଯାଏ । ଦୃଷ୍ଟାନ୍ତ ସ୍ୱରୂପ, ଶୋଥ, ପ୍ଲୀହାବୃଦ୍ଧି, ଶ୍ଲୀପଦ ଓ ଗୋଦର ପ୍ରଭୃତି ମଧ୍ୟ ଶାରୀରିକ ବିକୃତି । ଶାରୀରିକ ବିକୃତି ପରି ମାନସିକ ବିକୃତି ମଧ୍ୟ ପ୍ରକାରଭେଦରେ ଭିନ୍ନ ଭିନ୍ନ ହୋଇଥାଏ ଏବଂ ଏହି ବିକୃତିମାନଙ୍କର ଭିନ୍ନତା ଯୋଗୁଁ ମାନବର ବିକୃତ ଆଚରଣମାନ ମଧ୍ୟ ଭିନ୍ନ ଭିନ୍ନ ହୋଇଥାଏ । ଭୟ ଏବଂ କ୍ରୋଧ ଯୋଡ଼ିଏ ମାନସିକ ବିକୃତି । ବସ୍ତୁତଃ ଅନ୍ୟ ଗୋଟିଏ ଭୟଙ୍କର ମାନସିକ ବିକୃତି । ଆତ୍ମପ୍ରୀତି (Nareissism) ମଧ୍ୟ ଗୋଟିଏ ମାନସିକ ବିକୃତି । ଏହି ବିକୃତି ଘଟିଲେ ମଣିଷ ନିଜକୁ ଅନ୍ୟଠାରୁ ବେଶୀ ସୁନ୍ଦର, ବେଶୀ ଜ୍ଞାନୀ ବା ବେଶୀ ମାନୀ ମନେ କରେ ।

ଏହିପରି ମାନସିକ ବିକୃତି ଓ ତଜ୍ଜନିତ ବିକୃତ ଆଚରଣ ପ୍ରକାର-ଭେଦରେ ଭିନ୍ନ ଭିନ୍ନ ହୋଇଥାଏ ।

ଶାରୀରିକ ବିକୃତି ଯେପରି ଶାରୀରିକ ବ୍ୟାଧିର ଫଳ, ମାନସିକ ବିକୃତି ସେହିପରି ମାନସିକ ରୋଗରୁ ଘଟେ । ମାନସିକ ରୋଗ କାହାକୁ କୁହାଯାଏ ? କବିରାଜ ଓ ଡାକ୍ତରିମତରେ ଶାରୀରିକ ରୋଗ ସମ୍ବନ୍ଧରେ ଯେପରି ଯୋଡ଼ିଏ ପ୍ରଧାନ ମତ ଦେଖାଯାଏ, ମାନସିକ ରୋଗ ସମ୍ବନ୍ଧରେ ମଧ୍ୟ ଯୋଡ଼ିଏ ପ୍ରଧାନ ମତ ଦେଖାଯାଏ, କବିରାଜି ମତରେ ଅସଂଯତ ଆହାର ବିହାରାଦି ହେତୁ ଶରୀରସ୍ଥ ବାତ, ପିତ୍ତ ଓ କଫ ପ୍ରକୁପିତ ହେଲେ ତାହାକୁ ରୋଗ କୁହାଯାଏ । ଡାକ୍ତରିମତରେ ବିଶେଷ ବିଶେଷ ଜୀବାଣୁ ଶରୀରସ୍ଥ ଜୀବନୀ ଶକ୍ତିକି ଆକ୍ରମଣ କରି ତାହାକୁ ଦୁର୍ବଳ କରି ପକାଇଲେ ରୋଗର ଆବିର୍ଭାବ ହୁଏ । ମାନସିକ ରୋଗସମ୍ବନ୍ଧରେ ଗୋଟିଏ ମତ ଏହାହିଁ ଯେ ମନୁଷ୍ୟ ତାହାର ଜୀବନକାଳ ମଧ୍ୟରେ ଯାହା ଯାହା କାମନା ବା ଇଚ୍ଛା କରେ, ସେହି କାମନାମାନଙ୍କ ମଧ୍ୟରୁ ଅଧିକାଂଶ ଅପୂରଣ ରହିଯାଏ । ଏହି ଅତୃପ୍ତ କାମନାମାନଙ୍କ ହେତୁରୁ ମନର ବିଶେଷ ଯନ୍ତ୍ରଣା ହୁଏ । ଏହି ଯନ୍ତ୍ରଣାକୁ ମାନସିକ ରୋଗ କୁହାଯାଏ । ମାନସିକ ଯନ୍ତ୍ରଣା ହେତୁ ମଣିଷର ମନରେ କ୍ରୋଧ, ଭୟ, ମସ୍ତିଷ୍କ ବିଭ୍ରମ ପ୍ରଭୃତି ମାନସିକ ବିକୃତି ଘଟେ । ମାନସିକ ରୋଗ ସମ୍ବନ୍ଧରେ ଅନ୍ୟ ଏକ ମତ ଏହାହିଁ ଯେ ମଣିଷର କାମନା ବା ଲାଳସାମାନଙ୍କର କୌଣସି ସୀମା ବା ନିର୍ଦ୍ଦିଷ୍ଟ ସଂଖ୍ୟା ନ ଥିବାରୁ ସେମାନଙ୍କର ଅତୃପ୍ତି ଘଟିବହିଁ ଘଟିବ । ଏଣୁ ଏହି ମତ ଅନୁସାରେ କାମନା ବା ଲାଳସାହିଁ ମାନସିକ ଯନ୍ତ୍ରଣାର ସୃଷ୍ଟି କରେ ।

ଗୋଟିଏ ମତ ଅନୁସାରେ କାମନାର ଅତୃପ୍ତି ହେଲେ ମାନସିକ ଯନ୍ତ୍ରଣା ଘଟେ । ଅନ୍ୟ ମତ ଅନୁସାରେ କାମନା କିମ୍ବା ଦ୍ୱାରହିଁ

ମାନସିକ ଯନ୍ତ୍ରଣା ଘଟେ । ଏହିହେତୁ ମାନସିକ ଯନ୍ତ୍ରଣାକୁ ନିବାରଣ କରିବାର ଉପାୟ ମଧ୍ୟ ଦୁଇ ମତ ଅନୁସାରେ ସମ୍ପୂର୍ଣ୍ଣ ଭିନ୍ନ ଭିନ୍ନ । ପ୍ରଥମ ମତ ଅନୁସାରେ ଯେଉଁ କାମନାର ଅତୃପ୍ତି ହେତୁ ମାନସିକ ଯନ୍ତ୍ରଣାରେ ବ୍ୟକ୍ତିବିଶେଷ କଷ୍ଟ ପାଉଛି, ସେହି କାମନାର ତୃପ୍ତି ଘଟାଅ, ତାହାହେଲେ ତାହାର ମାନସିକ ଯନ୍ତ୍ରଣାର ତିରୋଭାବ ଘଟିବ । ଯଦି ଉକ୍ତ ଅତୃପ୍ତ କାମନାକୁ ତୃପ୍ତ କରିବା ଅସମ୍ଭବ ହୁଏ, ତେବେ ଉକ୍ତ କାମନାର କୌଣସି ପ୍ରକାର ରୂପାନ୍ତରିତ ତୃପ୍ତି (Sublimation) ଘଟାଅ; ମାନସିକ ଯନ୍ତ୍ରଣାର ତିରୋଧାନ ହେବ । ଦୃଷ୍ଟାନ୍ତସ୍ୱରୂପ କୌଣସି କବିର କବିତା ଲେଖାକିମ୍ବା ତାହାର କୌଣସି ଅବରୁଦ୍ଧ ବା ଅତୃପ୍ତ କାମନାର ରୂପାନ୍ତରିତ ତୃପ୍ତି ଛଡ଼ା ଆଉ କିଛି ନୁହେ । ଉକ୍ତ ମତ ଅନୁସାରେ କବି ତାହାର କୌଣସି ଅବରୁଦ୍ଧ ପ୍ରବଳ ଅଭିଳାଷକୁ ତୃପ୍ତ କରିବାରେ ଅସମର୍ଥ ହୋଇ କବିତା ଲେଖିବା ଦ୍ୱାରା ଏହି ଅପୂର୍ଣ୍ଣ ଇଚ୍ଛାକୁ ତୃପ୍ତ କରି ଆନନ୍ଦ ପାଏ । କବିର କବିତା, ଶିଳ୍ପୀର ଶିଳ୍ପରଚନା ଇତ୍ୟାଦିକୁ ଅବରୁଦ୍ଧ ମୌଳିକ ଅଭିଳାଷମାନଙ୍କର ରୂପାନ୍ତରିତ ତୃପ୍ତି (Sublimation of the crude instinctive desires) ବୋଲିଯାଏ । ଏହି ମତଟି ପାଶ୍ଚାତ୍ୟର ମନସ୍ତତ୍ତ୍ୱଜ୍ଞ ମନୀଷୀଙ୍କର । ମାନସିକ ବ୍ୟାଧି ଓ ବିକୃତି ଏବଂ ତନ୍ନିବାରଣ ସମ୍ବନ୍ଧରେ ସବୁ ପାଶ୍ଚାତ୍ୟ ମନସ୍ତତ୍ତ୍ୱଜ୍ଞ ପଣ୍ଡିତମାନଙ୍କର ଏହା ଯେ ଏକମାତ୍ର ମତ ତାହା ନୁହେ । ସେମାନଙ୍କ ମଧ୍ୟରେ ଅନେକ ମତଭେଦ ଦେଖାଯାଏ । କାହାରି କାହାରି ମତରେ କାମନାର ରୂପାନ୍ତରିତ ତୃପ୍ତି ଦ୍ୱାରା ମାନସିକ ଯନ୍ତ୍ରଣାର ସାମୟିକ ଉପଶମ ମାତ୍ର ଘଟେ, ସମ୍ପୂର୍ଣ୍ଣ ତିରୋଧାନ ହୁଏ ନାହିଁ । ଏମାନଙ୍କ ମତରେ ମଣିଷର ରମଣେଚ୍ଛାହିଁ (Sex-hunger) ସବୁଠାରୁ ବେଶୀ ପ୍ରବଳ ଏବଂ ଏହି ଇଚ୍ଛାରହିଁ ବେଶୀ ଅବରୋଧ ଘଟେ । ଏଣୁ

ଅଧିକାଂଶ ମାନସିକ ବିକୃତି ଓ ଯନ୍ତ୍ରଣା ରମଣେଚ୍ଛାର ଅବରୋଧରୁ ଜାତ ହୁଏ। ରମଣେଚ୍ଛାର ଅବରୋଧ ଯେପରି ନ ଘଟିବ, ଏଥିପାଇଁ ଏମାନେ କହନ୍ତି ଯେ ସମାଜରୁ ପରିବାରପ୍ରଥା ଓ ପରିବାରଜୀବନକୁ ଲୋପ କରାଯାଉ ଏବଂ କୌଣସି ପ୍ରକାର ରମଣ ବ୍ୟଭିଚାରକୁ ଦଣ୍ଡନୀୟ କରା ନ ଯାଉ। ଅନ୍ୟ କେତେକ ପାଶ୍ଚାତ୍ୟ ଦାର୍ଶନିକ ଓ ମନସ୍ତତ୍ତ୍ୱଜ୍ଞଙ୍କ ମତରେ ମନୁଷ୍ୟର ରମଣାକାଙ୍କ୍ଷା ପରି ଭୋଜନାକାଙ୍କ୍ଷା ମଧ୍ୟ ନାନାଭାବରେ ଅବରୁଦ୍ଧ ହୁଏ; ଏଣୁ ଏମାନେ କହନ୍ତି ଯେ ଜାତିର ସମସ୍ତ ଧନ ଓ ଖାଦ୍ୟକୁ ସମସ୍ତଙ୍କ ମଧ୍ୟରେ ପ୍ରୟୋଜନାନୁସାରେ ବାଣ୍ଟି ଦିଆଯାଉ। ସମାଜରେ ଧନୀ ଓ ଦରିଦ୍ର ବୋଲି ଯୋଡ଼ିଏ ଶ୍ରେଣୀ ନ ରହନ୍ତୁ ଏହା ଏମାନଙ୍କର ମତ।

ପୂର୍ବରୁ କୁହାଯାଇଅଛି ଯେ "ଗୋଟିଏ ମତ ଅନୁସାରେ କାମନାମାନଙ୍କର ଅତୃପ୍ତି ହେଲେ ମାନସିକ ଯନ୍ତ୍ରଣା ଘଟେ, ଅନ୍ୟ ମତ ଅନୁସାରେ କାମନା କରିବା ଦ୍ୱାରହିଁ ମାନସିକ ଯନ୍ତ୍ରଣା ଘଟେ।" ଏହି ଦ୍ୱିତୀୟ ମତହିଁ ପ୍ରାଚ୍ୟ ଦର୍ଶନର ମତ, ଶ୍ରୀମଦ୍ ଭଗବଦ୍‌ଗୀତାର ମତ। ଗୀତା ବଜ୍ରନିର୍ଘୋଷରେ କହେ, "ମଣିଷର ଯେ କୌଣସି ମାନସିକ ଯନ୍ତ୍ରଣା ଥାଉ ନା କାହିଁକି, ତାହାର ଆଚରଣ ଯେତେ ବିକୃତ ହେଉ ନା କାହିଁକି, ସେ ଯେଉଁ ମୁହୂର୍ତ୍ତରୁ ସକଳ ପ୍ରକାର କାମନାବର୍ଜିତ ହେବ, ସେହି ମୁହୂର୍ତ୍ତରୁ ତାହାର ସକଳ ପ୍ରକାର ମାନସିକ ଯନ୍ତ୍ରଣା ଓ ମାନସିକ ବିକୃତି (Mental complexes and Neurosis) ଦୂର ହୋଇଯିବ।" ଅନ୍ୟ କଥାରେ ନିଷ୍କାମଭାବରେ କାର୍ଯ୍ୟ କରିବାକୁ ଗୀତାର ଉପଦେଶ। ମଣିଷ ଯାହା କର୍ତ୍ତବ୍ୟ ମନେ କରୁଛି ତାହା କରିଯାଉ, ମାତ୍ର ତାହାର ଫଳାଫଳ ପ୍ରତି ଦୃଷ୍ଟି ନ ରଖୁ। ମଣିଷ ଯେଉଁ କାର୍ଯ୍ୟ କରେ, ସେହି କାର୍ଯ୍ୟର ଫଳାଫଳ ମଣିଷର ଇଚ୍ଛା ବା କ୍ରିୟା ଉପରେ କେବଳ ନିର୍ଭର କରେ ନାହିଁ। ମଣିଷ

ତାହାର କୃତକର୍ମ ହେତୁ ଯେଉଁ ଫଳ ଭୋଗ କରେ ସେହି ଫଳର କାରଣ କେବଳ କୃତକର୍ମ ନୁହେ । ମଣିଷ ନିଜେ ବି ଏହି ଫଳର କାରଣ । ଯେଉଁ ସ୍ଥାନରେ ଓ ଯେଉଁ ସମୟରେ ଉକ୍ତ କର୍ମ କରା ଯାଏ, ସେହି ସ୍ଥାନ ଓ ସମୟହିଁ ଉକ୍ତ କର୍ମଫଳର କାରଣ । ଶେଷରେ କର୍ମଫଳ ପାଇଁ ସ୍ଥାନ କାଳ, କର୍ମ ଏବଂ କର୍ମକର୍ତ୍ତା ଯଥେଷ୍ଟ ନୁହନ୍ତି । ଅନ୍ୟ ଏକ ପ୍ରବଳତମ ଅଜ୍ଞାତ କାରଣ (Unknown cause) ଅଛି । ଏହି ଅଜ୍ଞାତ କାରଣକୁ ଆଇନ୍‌ଷ୍ଟିନ୍‌ଙ୍କ ମତ ଅନୁସାରେ ପରିଶିଷ୍ଟ କାରଣ ବା ପଞ୍ଚମ କାରଣ (Residuary cause or 5th cause) କୁହାଯାଏ । ପ୍ରାଚ୍ୟ ଦର୍ଶନ ଅନୁସାରେ ଏହି ଅଜ୍ଞାତ କାରଣକୁ ଅପାଦାନ କାରଣ ବା ବିଶ୍ୱଇଚ୍ଛା କୁହାଯାଏ । ଏଣୁ ମଣିଷ କୌଣସି ଫଳ କାମନା କରି ଯେତେ ସତର୍କ ହୋଇ କର୍ମ କରୁ ପଛକେ ସ୍ଥାନ ଏବଂ କାଳକୁ ଏହି ଫଳଲାଭ ପାଇଁ ଯେତେ ସଂଯତ କରୁ ପଛକେ, ପ୍ରବଳତମ ଅଜ୍ଞାତ ପଞ୍ଚମ କାରଣର ବିଦ୍ୟମାନତା ଯୋଗୁ ସେ କଦାପି ନିଜର ଇଚ୍ଛାନୁଯାୟୀ ଫଳଲାଭ କରି ପାରେ ନାହିଁ । ନିଜ ଇଚ୍ଛା ଅନୁଯାୟୀ ଫଳଲାଭ ନ କରିବାରୁ ତାହାର ଅଶେଷ ମାନସିକ ଯନ୍ତ୍ରଣା ଘଟେ । ଏଣୁ ଗୀତା କହେ, "ନିଷ୍କାମ ଭାବରେ କାର୍ଯ୍ୟ କର, ଫଳାଫଳ ପ୍ରତି ଦୃଷ୍ଟି ରଖ ନାହିଁ ।

ଏହି ଅଧ୍ୟାୟ ଶେଷ କରିବା ପୂର୍ବରୁ ଅନ୍ୟ ଗୋଟିଏ ବିଷୟ କହିବା ଆବଶ୍ୟକ । ମଣିଷର ସର୍ବବିଧ ଆଚରଣର ମୂଳରେ ତାହାର ମାନସିକ ପ୍ରେରଣା (Urge) ରହିଅଛି । ଅନ୍ୟ କଥାରେ ମଣିଷର କାମନା ବା ଅଭିଳାଷହିଁ ତାହାକୁ ସକ୍ରିୟ କରେ । କେହି କେହି କହନ୍ତି, ଜଡ଼ବସ୍ତୁ ପଥରଠାରେ ମଧ୍ୟ ଏହି ପ୍ରେରଣା ଅଛି, ମାତ୍ର ଏହି ପ୍ରେରଣା ସୁପ୍ତ (Inert) ଥାଏ । ମଣିଷ ଯଦି ତାହାର କାମନା

ବା ଅଭିଳାଷକୁ ସଂଯତ ଓ ଅବିକୃତ ରଖି ପାରେ ତେବେ ତାହାର କିମ୍ବା ମଧ୍ୟ ବିକୃତ ନ ହୋଇ ସ୍ୱାଭାବିକ ହେବ । କେତେକ ପାଶ୍ଚାତ୍ୟ ପଣ୍ଡିତ କହନ୍ତି ଯେ ମଣିଷର ଯାବତୀୟ ଶାରୀରିକ ଓ ମାନସିକ ଅସ୍ୱାସ୍ଥ୍ୟର ମୂଳରେ ତାହାର ଦୁର୍ଜୟ ଓ ଅସଂଯତ କାମନା ରହିଅଛି । ହୋମିଓପାଥି ଚିକିତ୍ସାବିଜ୍ଞାନ ପ୍ରତିଷ୍ଠାତା ମହାମତି ହ୍ୟାନେମାନ କହନ୍ତି ଯେ କୁମନନ ବା କୁଚିନ୍ତାହିଁ ଯାବତୀୟ ରୋଗର ନିଦାନ । ଶ୍ରୀମଦ୍ ଭଗବଦ୍‌ଗୀତା ଦୁର୍ଜୟ କାମକୁ ମଣିଷର ସର୍ବବିଧ ଦୁଃଖ, ଶୋକ ଓ ଯନ୍ତ୍ରଣାର କାରଣ ବୋଲି ନିର୍ଦ୍ଦେଶ କରିଅଛି । କାମକୁ ସାଧାରଣ ଇଚ୍ଛା ଏବଂ ରମଣେଚ୍ଛା (Sexual wish) ଏହି ଦ୍ୱିବିଧ ବ୍ୟାପକ ଓ ସଂକୀର୍ଣ୍ଣ ଅର୍ଥରେ ଗ୍ରହଣ କରାଯାଏ । ଅନ୍ୟ କଥାରେ କାମର ବ୍ୟାପକ ଅର୍ଥ କାମନା ଏବଂ ଏହାର ସଂକୀର୍ଣ୍ଣ ଅର୍ଥ କନ୍ଦର୍ପ ।

ସିଗ୍‌ମଣ୍ଡ ଫ୍ରଏଡ଼ କହନ୍ତି ଯେ ମଣିଷର ସର୍ବବିଧ ମାନସିକ ବିକୃତିର କାରଣ ହେଉଛି ଲିବିଡ଼ୋ (Libido) । ଏହି ଲିବିଡ଼ୋର ଅର୍ଥ ଗୀତାର କାମ ଛଡ଼ା ଆଉ କିଛି ନୁହେଁ । ମାତ୍ର ଗୀତା କହେ, ଏହି କାମକୁ ସଂଯତ କରି ନିଷ୍କାମ ଭାବରେ କାର୍ଯ୍ୟ କରିଯିବାକୁ ଏବଂ ଫ୍ରଏଡ଼ କହନ୍ତି ଏହି କାମର ରୂପାନ୍ତରିତ ବୃତ୍ତି (Sublimation) କରିବାକୁ । ଏହାହିଁ ପ୍ରାଚ୍ୟ ଓ ପାଶ୍ଚାତ୍ୟ ମନସ୍ତତ୍ତ୍ୱ ବିଜ୍ଞାନରେ ମୌଳିକ ପ୍ରଭେଦ ।

ଶାରୀରିକ ରୋଗ ଯେପରି ଗୋଟିଏ ମାତ୍ର ଏବଂ ଶରୀରର ଭିନ୍ନ ଭିନ୍ନ ସ୍ଥାନକୁ ଅଧିକାର କଲେ ଭିନ୍ନ ଭିନ୍ନ ରୋଗର ନାମ ଗ୍ରହଣ କରେ, ମନର ରୋଗ ସେହିପରି ଗୋଟିଏ । କେବଳ ଆଚରଣର ବିଭିନ୍ନତା ହେତୁରୁ ମାନସିକ ବିକୃତିମାନଙ୍କୁ ଭିନ୍ନ ଭିନ୍ନ ନାମ ବର୍ଣ୍ଣନା ଓ

ବିଶ୍ଳେଷଣର ସୁବିଧା ପାଇଁ ଦିଆଯାଏ ।  ଯେଉଁ ରୋଗଶକ୍ତି ମସ୍ତିଷ୍କକୁ ଆକ୍ରମଣ କଲେ ତାହାକୁ ଉନ୍ମାଦ (Insanity) କୁହାଯାଏ, ଠିକ ସେହି ରୋଗଶକ୍ତି ଫୁସଫୁସକୁ ଆକ୍ରମଣ କରି ଯକ୍ଷ୍ମାନାମ ଗ୍ରହଣ କରେ ଏବଂ ମଳ ନଳୀକୁ ଆକ୍ରମଣ କରି ଅର୍ଶ ଓ ଭଗନ୍ଦର (Fistula in ano) ପାଲଟେ ।  ଠିକ୍ ଏହିପରି କାମ ମନର ଦୟା ଓ ପ୍ରେମର ସ୍ତରକୁ ଆକ୍ରମଣ କଲେ ତାହାକୁ ପରପୀଡ଼ା-ବିକୃତି (Saddism) କୁହାଯାଏ ।  ଏହି କାମ ମନର ଚେତନାସ୍ତରକୁ ଆକ୍ରମଣ କଲେ ଯେଉଁ ମାନସିକ ବିକୃତି ଘଟେ, ତାହାକୁ ସମ୍ମୋହ-ବିକୃତି (Subconscious Neurosis) କୁହାଯାଏ ।  ଏହି କାମ ସ୍ମୃତିକୁ ଆକ୍ରମଣ କଲେ ତାହାକୁ ବିସ୍ମୃତିର ବିକୃତି କୁହାଯାଏ ।

---



# ଦ୍ୱିତୀୟ ପରିଚ୍ଛେଦ

## ପରପୀଡ଼କ ଓ ଆତ୍ମପୀଡ଼କ

## (Saddists and Masochists)

ମଣିଷମାନଙ୍କ ମଧ୍ୟରେ ଯେଉଁ ଅସ୍ୱାଭାବିକ ବା ବିକୃତ ଆଚରଣ ଦେଖାଯାଏ, ସେମାନଙ୍କ ମଧ୍ୟରେ ପରପୀଡ଼କ ଓ ଆତ୍ମପୀଡ଼କ ନାମକ ଯୋଡ଼ିଏ ବିକୃତ ଆଚରଣ ସର୍ବପ୍ରଧାନ । ପରପୀଡ଼କ ଆଚରଣରେ ମଣିଷ ଅପରକୁ କଷ୍ଟ ଦିଏ ; ଆତ୍ମପୀଡ଼କ ଆଚରଣଦ୍ୱାରା ମଣିଷ ଆପଣାକୁ ପୀଡ଼ା ଦିଏ । ପୃଥିବୀର ଇତିହାସରେ ଯେଉଁ ହତ୍ୟାକାଣ୍ଡ ଓ ଯୁଦ୍ଧମାନ ସଂଘଟିତ ହୋଇଅଛି, ସେମାନଙ୍କ ମଧ୍ୟରୁ ଅଧିକାଂଶ କୌଣସି ନା କୌଣସି ପରପୀଡ଼କ ବ୍ୟକ୍ତିର ଖାମଖିଆଲ ଫଳରେ ସମ୍ଭବ ହୋଇଅଛି ।

ପରପୀଡ଼କ ବ୍ୟକ୍ତି ନିଷ୍ଠୁରପ୍ରକୃତିର । ତାହାର ହୃଦୟରେ ଦୟାମାୟାର ସ୍ଥାନ ନ ଥାଏ । ସ୍ତ୍ରୀ, ପୁତ୍ର ଓ ପରିବାର ସ୍ୱଜନଙ୍କୁ ସେ ନିଜର ସ୍ୱାର୍ଥଦୃଷ୍ଟିରୁ କେବଳ ଆପଣାର ଭାବେ । ସାମାନ୍ୟ କଥାରେ ସେ ରାଗିଯାଇ ସ୍ତ୍ରୀ, ପୁତ୍ର ଓ ନିଜର ଚାକରମାନଙ୍କୁ ଗାଳି ଦିଏ ଓ ମାରଧର କରେ । ଖାଇବା ବେଳେ ସେ ଯଦି ରାଗିଯାଏ, ତେବେ ତାହାର ରାଗର ଦାଉକୁ ଭାତଥାଳି ଉପରେ ସୁଝିନିଏ । ସେ ନିଜର ଭାତଥାଳିକୁ ଫୋପାଡ଼ି ଦିଏ । ଏହି କାର୍ଯ୍ୟଦ୍ୱାରା ସେ ପରିବାରର କୌଣସି ବ୍ୟକ୍ତିପ୍ରତି ବିରକ୍ତ ହୋଇ ତାହାକୁ ମାରିବା ପରିବର୍ତ୍ତେ ଭାତଥାଳିଟାକୁ ଯେପରିକି ପ୍ରହାର କରେ । ଶିଶୁର ଏହି ପରପୀଡ଼ା-ବିକୃତି ଘଟିଲେ ସେ ନିଜର ଜନନୀ ଉପରେ କ୍ରୋଧର ଦାଉକୁ

କଣ୍ଟାଇ ଉପରେ ସାରନ୍ତିଏ, ଅର୍ଥାତ୍ ଶିଶୁ ମାଆ ଉପରେ ରାଗି ନିଜର କଣ୍ଟାଇକୁ ଦୂରକୁ ଫିଙ୍ଗି ଦେଇ ଭାଙ୍ଗିଦିଏ । ଏହି ପ୍ରକାର କ୍ରୋଧକୁ ବଦଳା କ୍ରୋଧ (Transferred Anger) କୁହାଯାଏ । ଜଣକ ପ୍ରତି କ୍ରୋଧକୁ ଅନ୍ୟ ପ୍ରତି ବା ନିଜ ପ୍ରତି ପ୍ରୟୋଗ କଲେ ତାହାକୁ ବଦଳା କ୍ରୋଧ କୁହାଯାଏ । ପରପୀଡ଼କ ଆତ୍ମପୀଡ଼କ ବ୍ୟକ୍ତିଙ୍କର ଅଧିକାଂଶ ବିକୃତ କ୍ରିୟାରେ ଏହି ପ୍ରକାର କ୍ରୋଧ ଦେଖାଯାଏ ।

ପରପୀଡ଼କ ବ୍ୟକ୍ତି ଅନ୍ୟର ଘର ପୋଡ଼ିଦିଏ; ଅନ୍ୟର ଘରୁ ଦ୍ରବ୍ୟାଦି ଲୁଣ୍ଠନ କରେ । ସେନାନାୟକ ପରପୀଡ଼ା-ବିକୃତିଗ୍ରସ୍ତ ହେଲେ ଗ୍ରାମନଗରମାନ ସୈନ୍ୟମାନଙ୍କ ଦ୍ୱାରା ପୋଡ଼ାଇଦିଏ; ଲୁଣ୍ଠନ କରାଏ; ସ୍ତ୍ରୀ, ଶିଶୁ ଓ ବୃଦ୍ଧ ନିର୍ବିଶେଷରେ ପ୍ରତ୍ୟେକ ବ୍ୟକ୍ତିଙ୍କୁ ହତ୍ୟା କରେ । ନିଜର ସ୍ତ୍ରୀ ପୁତ୍ରଙ୍କୁ ଯେତେବେଳେ କୌଣସି ଆତତାୟୀ ଆକ୍ରମଣ କରେ, ନିଜର ସ୍ତ୍ରୀ ପୁତ୍ର ଯେତେବେଳେ କୌଣସି ଭୟଙ୍କର ବିପଦରେ ପଡ଼ନ୍ତି, ନିଜର ପିତା ବା ମାତା ଯେତେବେଳେ ମୃତ୍ୟୁ-ଯନ୍ତ୍ରଣାରେ ଛଟପଟ ହେଉଥାନ୍ତି, ପରପୀଡ଼କ ସେତେବେଳେ ନିଜର ବ୍ୟସନରେ, ଆମୋଦ ପ୍ରମୋଦରେ ରତ ଥାଏ । ଏହା ଭାରତୀୟ ପ୍ରାଚୀନ ଋଷିମାନଙ୍କର ଅନାସକ୍ତ ମନୋବୃତ୍ତି(Detachment)ନୁହେଁ, କି ଗ୍ରିକ ଷ୍ଟୋଇକ ଦାର୍ଶନିକମାନଙ୍କ ଔଦାସୀନ୍ୟ ( Stoic Indifference) ନୁହେଁ । ଏହା ଏପରି ଏକ ବିକୃତି ଯହିଁରେ ଥାଏ କେବଳ ସ୍ୱାର୍ଥ ଓ ନିଷ୍ଠୁରତା ।

ସିଗମଣ୍ଡ ଫ୍ରଏଡ଼ଙ୍କ ମତରେ ପରପୀଡ଼ା ଓ ଆତ୍ମପୀଡ଼ା ବିକୃତିର ଅଙ୍କୁର ଅତିବାଲ୍ୟକାଳରୁ ଶିଶୁମନରେ ରୋପିତ ହୁଏ । ଶିଶୁର ବୟସ ଯେତେବେଳେ ଦେଢ଼ବର୍ଷ ବା ଦୁଇ ବର୍ଷ, ସେତେବେଳେ ତାହାର ଲିଙ୍ଗମଣ୍ଡଳ ବା ରମଣକ୍ରିୟା କେନ୍ଦ୍ର (Sexual zone) ମୁଖ-

ଗହ୍ୱରରୁ ମୂତ୍ରନଳୀ ଓ ମଳନଳୀକୁ ବ୍ୟାପ୍ତ ହୁଏ। ଯେଉଁ ସ୍ଥାନରେ ରମଣକ୍ରିୟାର ଶିହରଣ (Sensïtiveness) ଅନୁଭୂତ ହୁଏ, ତାହାକୁ ରମଣକ୍ରିୟାକେନ୍ଦ୍ର କୁହାଯାଏ। ଶିଶୁର ମୁଖଗହ୍ୱରହିଁ ପ୍ରଥମେ ତାହାର ରମଣକ୍ରିୟାକେନ୍ଦ୍ର ଥାଏ। ଏଣୁ ଶିଶୁ ତାର ମୁଖମଧ୍ୟରେ ଅଙ୍ଗୁଳି ପୂରାଇବାରେ ଆନନ୍ଦ ଅନୁଭବ କରେ ବା କ୍ଷୁଧା ନ ଥିଲେ ମଧ୍ୟ ମାତୃସ୍ତନକୁ ମୁଖରେ ନ ଦେଲେ ଶୋଇ ପାରେ ନାହିଁ। ଯେତେବେଳେ ଶିଶୁର ରମଣକ୍ରିୟାକେନ୍ଦ୍ର ପାୟୁ ଓ ଉପସ୍ଥକୁ ବ୍ୟାପ୍ତ ହୁଏ, ସେତେବେଳେ ଶିଶୁ ମଳ ମୂତ୍ରର ବେଗରୋଧ କରିବାକୁ ଚେଷ୍ଟା କରେ। ଫ୍ରଏଡ଼ଙ୍କ ମତରେ ମଣିଷର ପ୍ରତ୍ୟେକ ଚେଷ୍ଟା ଓ ଆଚରଣ ପ୍ରସାଦ ବିଷାଦ ନୀତି ଉପରେ ପ୍ରତିଷ୍ଠିତ (based on pleasure pain principle)। ଯେଉଁ ଚେଷ୍ଟା ବା କାର୍ଯ୍ୟ କଲେ ମଣିଷର ମନରେ ପ୍ରସାଦ ବା ଆନନ୍ଦ ଜନ୍ମେ, ସେହିପରି ଚେଷ୍ଟା କରିବାକୁ ମଣିଷ ଭଲ ପାଏ, ଯାହା କଲେ ତାହାର ମନରେ ବିଷାଦ ହେବ ବା ଯନ୍ତ୍ରଣା ହେବ, ତାହା ଏଡ଼ିବାକୁ ସେ ସର୍ବଦା ଯତ୍ନ କରେ। ଏଣୁ ଶିଶୁ ଯେ ମଳମୂତ୍ରର ବେଗରୋଧ କରେ, ଏହାର କାରଣ ତହିଁରେ ତାହାର ସୁଖ ହୁଏ ବୋଲି। ଏହି ହେତୁରୁ ତାହାର ପାୟୁନିର୍ଗତ ବିଷ୍ଠା ଏବଂ ଉପସ୍ଥନିର୍ଗତ ମୂତ୍ର ଶିଶୁର ଏକ ଅଭିନବ ଆସକ୍ତି ଓ ଅନୁସନ୍ଧାନର ବସ୍ତୁ ହୋଇପଡ଼େ। କେତେକ ବିକୃତଗ୍ରସ୍ତ ରୋଗୀ ଆପଣା କ୍ଷତର ଦୁର୍ଗନ୍ଧ ପୂଜ ରକ୍ତକୁ ଶୁଙ୍ଘିଲା ପରି ଶିଶୁ ନିଜର ମଳମୂତ୍ରକୁ ଘଣ୍ଟାଘାଣ୍ଟି କରେ ଏବଂ ଖାଇଯାଏ। ଏହି ପ୍ରକାର ଆଚରଣରେ ସେ ଜନକଜନନୀଠାରୁ ବାଧା ପାଏ। ବାଧା ପାଇବାରୁ ଶିଶୁର ମନରେ ଯେଉଁ କ୍ରୋଧର ସଞ୍ଚାର ହୁଏ, ସେହି କ୍ରୋଧ ଫଳରେ କେତେକ ପରପୀଡ଼ା ବିକୃତିଗ୍ରସ୍ତ ଓ ଅନ୍ୟ କେତେକ ଆତ୍ମପୀଡ଼ା ବିକୃତିଗ୍ରସ୍ତ ହୋଇଯାନ୍ତି।

ଫ୍ରଏଡ଼ କହନ୍ତି ଯେ ଅଧିକାଂଶ ଶିଶୁପୁତ୍ର ପରପୀଡ଼କ ଓ ଅଧିକାଂଶ ଶିଶୁକନ୍ୟା ଆତ୍ମପୀଡ଼କ ହୋଇଯାନ୍ତି । ବିଷ୍ଠା ହରିଦ୍ରାବର୍ଣ୍ଣ ବିଶିଷ୍ଟ, ଶିଶୁର ହରିଦ୍ରାବର୍ଣ୍ଣବିଶିଷ୍ଟ ବିଷ୍ଠା ପ୍ରତି ଆସକ୍ତି ଜନକ ଜନନୀର ତାଡ଼ନା ଫଳରେ ଅନ୍ୟ ହଳଦିଆ ବର୍ଣ୍ଣର ବସ୍ତୁ ପ୍ରତି ସମ୍ପୃକ୍ତ ହୋଇଯାଏ । ଅନେକ ସ୍ୱର୍ଣ୍ଣଲୋଭୀ ବ୍ୟକ୍ତିଙ୍କଠାରେ ଏହି ଉକ୍ତି ପ୍ରଯୁଜ୍ୟ ବୋଲି ଫ୍ରଏଡ଼ଙ୍କର ମତ । ଶୈଶବରେ ନିଜର ବିଷ୍ଠାପ୍ରତି ଆସକ୍ତ ଥିବା ବ୍ୟକ୍ତିହିଁ ଉତ୍ତରକାଳରେ ସୁବର୍ଣ୍ଣ ପ୍ରତି ଆସକ୍ତ ହୋଇ ପାରେ । ମାତ୍ର ସୁବର୍ଣ୍ଣ ପ୍ରତି ଆସକ୍ତି ଯେ ବିଷ୍ଠା ପ୍ରତି ଆସକ୍ତିର ରୂପାନ୍ତର ମାତ୍ର ଏହା ବ୍ୟକ୍ତିବିଶେଷ ଭୁଲିଯାଏ । ଫ୍ରଏଡ଼ଙ୍କ ମତରେ ମଣିଷର ଯଦି ଭୁଲିଯିବା ପ୍ରକୃତି ନ ଥାନ୍ତା, ତେବେ ତାହାର କୌଣସି ପ୍ରକାର ମାନସିକ ବିକୃତି ଘଟନ୍ତା ନାହିଁ । ଅତ୍ୟନ୍ତ ଅର୍ଥଲୋଭୀ ଓ କୃପଣ ବ୍ୟକ୍ତିର ଆଚରଣ ମଧ୍ୟ ଶୈଶବର ଏହି ଖେୟାଲରୁ (Childish impulse) ସମ୍ଭୂତ ହୁଏ । ଏହି ଉକ୍ତିମାନ କେତେଦୂର ଯଥାର୍ଥ ତାହା ଆମ୍ଭେମାନେ କହି ପାରିବୁ ନାହିଁ । ତେବେ ଫ୍ରଏଡ଼ଙ୍କର ଉକ୍ତ ମତମାନ ମନସ୍ତତ୍ତ୍ୱଜ୍ଞ ପଣ୍ଡିତଙ୍କ ମଧ୍ୟରେ ତୁମୁଳ ତର୍କ ବିତର୍କ ଓ ସମାଲୋଚନାର ଯେପରି ସୃଷ୍ଟି କରିଛି ।

ପତଞ୍ଜଳିଙ୍କ ଯୋଗ ଦର୍ଶନ ଓ ଶ୍ରୀମଦ୍ ଭଗବଦ୍‌ଗୀତା ଆଲୋଚନା କଲେ ଜଣାଯାଏ ଯେ କୌଣସି ବିଷୟ ବା ବସ୍ତୁକୁ ବାରମ୍ବାର ଅନୁଧ୍ୟାନ କଲେ ଉକ୍ତ ବିଷୟ ପ୍ରତି ଗୋଟିଏ ଆସକ୍ତି ବା ପ୍ରୀତି (Association) ଜନ୍ମେ, ଏହି ଆସକ୍ତିରୁ ଉକ୍ତ ବସ୍ତୁକୁ ଲାଭ କରିବାକୁ ବା ଉକ୍ତ ବସ୍ତୁ ସଙ୍ଗେ ଯୋଗ ହେବାକୁ ଆକାଙ୍‌କ୍ଷା ଜନ୍ମେ । ବସ୍ତୁକୁ ଲାଭ କରିବାର ଆକାଙ୍‌କ୍ଷା ବା ବସ୍ତୁ ସଙ୍ଗେ ଯୋଗ ହେବାର ଆକାଙ୍‌କ୍ଷାକୁ ଯୌନାକାଙ୍‌କ୍ଷା ବା କାମ କୁହାଯାଏ । କାମର ଯେପରି ସଙ୍କୀର୍ଣ୍ଣ ଓ ବ୍ୟାପକ ଭେଦରେ ଦ୍ୱିବିଧ ଅର୍ଥ ଅଛି, ଯୌନାକାଙ୍‌କ୍ଷାର

ମଧ୍ୟ ସଙ୍କୀର୍ଣ୍ଣ ଓ ବ୍ୟାପକ ଭାବରେ ଦ୍ୱିବିଧ ଅର୍ଥ ଅଛି । ଦୁଇଟି ବସ୍ତୁ ପରସ୍ପର ସହ ସଂଯୁକ୍ତ ହୋଇ ଏକ ହୋଇଯିବାକୁ ଯୌନକ୍ରିୟା କହନ୍ତି । ଯୌନକ୍ରିୟା ଭୋଜନାତ୍ମକ ଏବଂ ରମଣାତ୍ମକ ଉଭୟବିଧ କ୍ରିୟାକୁ ବୁଝାଇଲେ ତାହାକୁ ଯୌନକ୍ରିୟାର ବ୍ୟାପକ ଅର୍ଥ କୁହାଯାଏ । କେବଳ ରମଣାତ୍ମକ କ୍ରିୟାକୁ ବୁଝାଇଲେ ଯୌନକ୍ରିୟାକୁ ସଙ୍କୀର୍ଣ୍ଣ ଅର୍ଥରେ ନିଆଯାଏ । ଫ୍ରଏଡଙ୍କ ମତରେ ମଣିଷର ପ୍ରତ୍ୟେକ କ୍ରିୟାର ମୂଳରେ ଯେଉଁ ଲିବିଡୋ (Libido) ଅଛି, ସେହି ଲିବିଡୋର ଅର୍ଥ ବ୍ୟାପକ ଓ ସଙ୍କୀର୍ଣ୍ଣ ଅର୍ଥରେ ଯୌନାକାଙ୍କ୍ଷା ଛଡ଼ା ଆଉ କିଛି ନୁହେଁ । ବକ ଓ ବକୀର ରତିକ୍ରିୟାର ମୂଳରେ ଏହି ଯୌନାକାଙ୍କ୍ଷା ହେବାର ଇଚ୍ଛା ରହିଅଛି । ବକ ଗୋଟିଏ ମତ୍ସ୍ୟକୁ ଗଳାଧଃ-କରଣ କରିବାରେ ମଧ୍ୟ ଏହି ସଂଯୁକ୍ତ ହେବାର ଇଚ୍ଛା ବା ଯୌନା-କାଙ୍କ୍ଷା ରହିଅଛି । ଚୁମ୍ବନ ଗୋଟିଏ ଯୌନକ୍ରିୟା, ଯହିଁରେ ସ୍ଥୂଳ ଭୋଜନ ଏବଂ ରତିକ୍ରିୟାର ରୂପାନ୍ତରିତ ଭାବ (Metamorphosis) ପ୍ରକଟିତ । ଆଦିମ ଅଣୁବିକ ଜୀବ ଏମିବା ଅନ୍ୟ ଏକ ଏମିବା ସଙ୍ଗେ ସଂଯୁକ୍ତ ହୋଇ ଏକ ହୋଇଯିବା ଦ୍ୱାରହିଁ ସେ ଦୁହିଁଙ୍କର ରତିକ୍ରିୟା ଓ ଭୋଜନକ୍ରିୟା ଉଭୟ ସମାହିତ ହୁଏ । ଏହି ଆଦିମ ଆଚରଣରୁ ମୁଖ ସାହାଯ୍ୟରେ ଭୋଜନକ୍ରିୟା ଏବଂ ଉପସ୍ଥ ସାହାଯ୍ୟରେ ରତିକ୍ରିୟା ଏବଂ ହସ୍ତପ୍ରମୁଖ କର୍ମେନ୍ଦ୍ରିୟ ଓ ଜ୍ଞାନେନ୍ଦ୍ରିୟ ସାହାଯ୍ୟରେ ମଣିଷର ବିଭିନ୍ନ କଳାମୂଳକ କ୍ରିୟାର (Artistic behaviours) ବିକାଶ ଘଟିଅଛି । ଏଣୁ ଫ୍ରଏଡ଼ଙ୍କର ଲିବିଡୋ ବା ଯୌନାକାଙ୍କ୍ଷା ଏବଂ ଗୀତାର କାମ ପ୍ରାୟଶଃ ଏକା ଅର୍ଥରେ ବ୍ୟବହୃତ । ଗୀତା ଏବଂ ଯୋଗଦର୍ଶନ କହେ ଯେ କାମରୁ କ୍ରୋଧର ଉତ୍ପତ୍ତି ଘଟେ । ଫ୍ରଏଡ଼ଙ୍କ ମତରେ ଯୌନାକାଙ୍କ୍ଷାର ଅବରୋଧରୁ କ୍ରୋଧର ଉଦ୍ରେକ ହୁଏ । ଏହାହିଁ ପ୍ରଭେଦ । ତେବେ କାମରୁ କ୍ରୋଧର ସଞ୍ଚାର

ହେଉ ବା ଯୌନାକାଙ୍କ୍ଷାର ଅବରୋଧରୁ କ୍ରୋଧର ଉଦ୍ରେକ ହେଉ, ଏହି କ୍ରୋଧର ଫଳରେ ମଣିଷର ମନରେ ଏକ ଅର୍ଦ୍ଧଚେତନାବସ୍ଥା ବା ସମ୍ମୋହ (Subconsciousness) ଜାତ ହୁଏ, ଏ ବିଷୟରେ ପାଶ୍ଚାତ୍ୟ ମନୋବିଜ୍ଞାନ ଏବଂ ପ୍ରାଚ୍ୟଦର୍ଶନ ଏକମତ। ପରପୀଡ଼କ ଏବଂ ଆତ୍ମପୀଡ଼କ ବିକୃତିରେ ଏହି କ୍ରୋଧ ଏବଂ ତଜ୍ଜାତ ସମ୍ମୋହର ମାତ୍ରା ପ୍ରବଳ ଭାବରେ ଦେଖାଯାଏ।

ପରପୀଡ଼କ ଅନ୍ୟ ବ୍ୟକ୍ତିର କାର୍ଯ୍ୟରେ ଅଯଥା ହସ୍ତକ୍ଷେପ କରେ। ତାହାର ଉକ୍ତ କାର୍ଯ୍ୟରେ କିଛି ଦକ୍ଷତା ଥାଉ ବା ନ ଥାଉ ସେ ବିଷୟ ପରପୀଡ଼କ ବିଚାର କରେ ନାହିଁ। ଦୁଇ ଜଣଙ୍କର କଜିଆ ଲାଗୁଛି, ପରପୀଡ଼କ ଉପରେ ପଡ଼ି ଜଣଙ୍କର ପକ୍ଷ ସମର୍ଥନ କରେ ଏବଂ ହତାହତ ଓ ମାରଧର କରିବାକୁ ଉଦ୍ୟମ କରେ। ଜଣେ ବ୍ୟକ୍ତି କୌଣସି କାର୍ଯ୍ୟ କରୁଛି, ପରପୀଡ଼କ ଆପଣାଛାଏଁ ଉକ୍ତ ବ୍ୟକ୍ତିର ଦୋଷ ତ୍ରୁଟି ଦେଖାଇଦିଏ; ଏତଦ୍ଦ୍ୱାରା ସେ ଅପମାନିତ ହୋଇ ଉକ୍ତ ବ୍ୟକ୍ତିକୁ ଗାଳି ଫଜିତ କରେ। ପରପୀଡ଼କର ପାଟିଠାରୁ ହାତହିଁ ବେଶୀ ସକ୍ରିୟ; ଆତ୍ମପୀଡ଼କ ବେଶୀ ବେଶୀ ଜୋରରେ ପାଟିକରି ବାକ୍ୟଯୁଦ୍ଧ କରେ; ମାତ୍ର ପରପୀଡ଼କ ସାମାନ୍ୟ ଉଚ୍ଚବାଚରେ ହସ୍ତଯୁଦ୍ଧରେ ତତ୍ପର ହୁଏ। ପରପୀଡ଼କ ଏବଂ ଆତ୍ମପୀଡ଼କ ଉଭୟ କଳହପ୍ରିୟ, ମାତ୍ର ଆତ୍ମପୀଡ଼କ ଥରେ କଳହରେ ପ୍ରବୃତ୍ତ ହେଲେ ବାକ୍ୟଯୁଦ୍ଧରେ ପ୍ରତିପକ୍ଷକୁ ନ ହଟାଇବା ଯାଏ କ୍ଷାନ୍ତ ହୁଏ ନାହିଁ। ପରପୀଡ଼କ ଏତେ ଦୂର ଯାଇ ପାରେ ନାହିଁ, ଯୁଦ୍ଧର ଶେଷ ନିଷ୍ପତ୍ତି କରିବାପାଇଁ ନିଜର ହସ୍ତ, ଦନ୍ତ ନଖାଦି ବା ଯଷ୍ଟିର ସାହାଯ୍ୟ ନିଏ। ପରପୀଡ଼କ ବ୍ୟକ୍ତିପାଖରେ ଛୁରି, ବାଡ଼ି ବା ଅନ୍ୟ କିଛି ଅସ୍ତ୍ର ଶସ୍ତ୍ର ଥିଲେ ତାହା ପାଖକୁ ସାବଧାନତା ସହ ଯିବା ଉଚିତ; କୌତୁକରେ ମଧ୍ୟ ସେ

ଅନ୍ୟବ୍ୟକ୍ତିର ଅଙ୍ଗରେ ଛୁରି ଚଳାଇ ତାହାକୁ ରକ୍ତରଞ୍ଜିତ କରିଦିଏ । ପରପୀଡ଼ାବିକୃତିବିଶିଷ୍ଟ ବାଳକ କୂଅ, ପୋଖରୀ ବା ନଦୀ ମଧ୍ୟକୁ ଅନ୍ୟ ସଙ୍ଗୀ ବାଳକଙ୍କୁ କୌତୁକରେ ପେଲି ଦେଇ ମଜା ଦେଖେ । ପରପୀଡ଼ାମନୋବୃତ୍ତିବିଶିଷ୍ଟ ବାଳକମାନେ ଗୃହରେ ଏବଂ ସ୍କୁଲରେ ପିତା ମାତା ଏବଂ ଶିକ୍ଷକଙ୍କର ଅବାଧ୍ୟ ହୁଅନ୍ତି; ପିତା ମାତା ଏବଂ ଶିକ୍ଷକମାନଙ୍କ ବିରୁଦ୍ଧରେ ବିଦ୍ରୋହୀ ହୋଇ ଉଠନ୍ତି; କ୍ଲାସର ଅନ୍ୟ ଛାତ୍ରମାନଙ୍କୁ ମତାଇ ଶିକ୍ଷକଙ୍କ ବିରୁଦ୍ଧରେ ଦଳଗଠନ କରନ୍ତି ଏବଂ ଦଳର ନେତା ହୁଅନ୍ତି । ଉତ୍ତରକାଳରେ ସମାଜର କର୍ମମୟ ଜୀବନରେ ପ୍ରବେଶ କରି ଏମାନଙ୍କର ଅବଜ୍ଞା, ଅବମାନନା ଓ ବିଦ୍ରୋହ ମନୋବୃତ୍ତି ଚାଲିଯାଏ ନାହିଁ, ବରଂ ବଢ଼େ । ଶୈଶବରେ ପିତାମାତାଙ୍କ ଶାସନଫଳରେ ଗୃହରେ ଏମାନେ ଅବାଧ୍ୟ ଓ ବିଦ୍ରୋହୀ ହୁଅନ୍ତି । ଏହି ଅବାଧ୍ୟତା ଓ ବିଦ୍ରୋହମନୋବୃତ୍ତି ଛାତ୍ରଜୀବନରେ ସ୍କୁଲର ଶିକ୍ଷକଙ୍କ ପ୍ରତି ଗୃହରୁ ସ୍କୁଲକୁ ସ୍ଥାନାନ୍ତରିତ ହୋଇଯାଏ । ଛାତ୍ରଜୀବନର ଅବକାଶ ପରେ ଯେତେବେଳେ ପରପୀଡ଼କ କର୍ମକ୍ଷେତ୍ରରେ ପ୍ରବେଶ କରେ ସେତେବେଳେ ସମାଜର ଶାସନ, ପ୍ରଥା, ଆଇନକାନୁନ ବିରୁଦ୍ଧରେ ଏବଂ ସରକାରୀ ଶାସନକଳ ବିରୁଦ୍ଧରେ ତାହାର ବିଦ୍ରୋହ କରିବାର କ୍ଷେତ୍ର ମିଳିଯାଏ ।

କେହି କେହି ମନସ୍ତତ୍ତ୍ୱଜ୍ଞ କହନ୍ତି ଯେ ପରପୀଡ଼କର ଅବାଧ୍ୟତା ଓ ବିଦ୍ରୋହ ମନୋବୃତ୍ତିଫଳରେ ସମାଜବିପ୍ଳବ ଓ ରାଷ୍ଟ୍ରବିପ୍ଳବ ସଂଘଟିତ ହୁଏ, ଏଣୁ ସମାଜର ଅଗ୍ରଗତି ଓ ବିକାଶ ଘଟେ । ସମାଜରେ ଧନୀ, ନିର୍ଦ୍ଧନ, ଶାସକ ଓ ଶାସିତ, ଅତ୍ୟାଚାରୀ ଓ ଅତ୍ୟାଚାରିତଙ୍କ ମଧ୍ୟରେ ଯେଉଁ ଅବିରାମ ଦ୍ୱନ୍ଦ୍ୱ ଲାଗି ରହିଥାଏ, ପରପୀଡ଼କ ତାହାର ପିତା ପ୍ରତି ଶୈଶବରେ ପ୍ରୟୋଗ କରିଥିବା ବିଦ୍ରୋହବୃତ୍ତିକୁ ଧନୀ, ଶାସକ

ଓ ଶୋଷକ ପ୍ରତି ସ୍ଥାନାନ୍ତରିତ ହୋଇ ଏବଂ ନିର୍ଦ୍ଧନ ଓ ଶୋଷିତ ଜନସାଧାରଣଙ୍କ ପକ୍ଷ ନେଇ ସାମାଜିକ ଦ୍ୱନ୍ଦ୍ୱର (Socialconflict) ପ୍ରତିବିଧାନ କରେ । କେହି କେହି ମନସ୍ତତ୍ତ୍ୱବିତ୍ ଉକ୍ତ ମତର ସମାଲୋଚନା କରି କହନ୍ତି ଯେ ପରପୀଡ଼ିକର ସମାଜବିଦ୍ରୋହୀ ଆଚରଣରେ କୌଣସି ପ୍ରବଳ ହେତୁବୋଧ (Rationality) ନ ଥାଏ । ବିପ୍ଳବର ମୂଳରେ ହେତୁବୋଧ ନ ଥିଲେ, ବିପ୍ଳବର ଲକ୍ଷ୍ୟ ସ୍ଥାୟୀ ଏବଂ ଅତୁଟ ନ ଥିଲେ ଶୀଘ୍ର ଏହି ବିପ୍ଳବର ପ୍ରତିକ୍ରିୟା (Counter revolution) ଦେଖାଯାଏ ଏବଂ ସାମାଜିକ ସଂଘର୍ଷ ପୂର୍ବଠାରୁ ତୀବ୍ରତର ହୋଇ ଉଠେ ।

ଏହି ମତଭେଦ ସମ୍ପର୍କରେ ଆମ୍ଭେମାନେ ଏତିକି କହିବାକୁ ଚାହୁଁ ଯେ କୌଣସି ବ୍ୟକ୍ତିର ଆଚରଣକୁ ସ୍ଥୂଳଦୃଷ୍ଟିରେ କେବଳ ଦେଖିଦେଇ ଆମ୍ଭେମାନେ କହି ପାରିବା ନାହିଁ, ଉକ୍ତ ବ୍ୟକ୍ତି ସୁସ୍ଥ କି ଅସୁସ୍ଥ; ଉକ୍ତ ବ୍ୟକ୍ତି ମାନସିକ ବିକୃତିଗ୍ରସ୍ତ କି ସୁସ୍ଥମନସମ୍ପନ୍ନ, ଉକ୍ତ ବ୍ୟକ୍ତି ପରପୀଡ଼ା ବିକୃତିଗ୍ରସ୍ତ କି ସୁସ୍ଥ ବିଦ୍ରୋହୀ ଏବଂ ବିପ୍ଳବୀ, ଉକ୍ତ ବ୍ୟକ୍ତି ପାଗଳାଗାରର ଅଭିଯାନୀ ବନ୍ଦି ପାଗଳ, କି ଯୋଗମାର୍ଗର ପଥିକ ଉଲଗ୍ନ ସନ୍ନ୍ୟାସୀ, ଉକ୍ତ ବ୍ୟକ୍ତି ଜଡ଼ତାର (Idioey) ଶେଷ-ସୀମାକୁ ଯାଇଛନ୍ତି, କି ପ୍ରତିଭାର ଚରମ ପରିଣତି ଲାଭ କରିଛନ୍ତି । ସ୍ଥୂଳ ଦୃଷ୍ଟିରୁ ଦେଖିଲେ ଗୋଟିଏ ସମ୍ମୋହ ବିକୃତିଗ୍ରସ୍ତ ଉଲଗ୍ନ ପାଗଳ (Fully Subconscious mad man) ଏବଂ ଜଣେ ସମାଧି-ସମ୍ପନ୍ନ ଉଲଗ୍ନ ଯୋଗୀର (Superconscious Yogi) ଆଚରଣ ମଧ୍ୟରେ କିଛି ପ୍ରଭେଦ ଦେଖାଯାଏ ନାହିଁ । ପାଗଳ ଏବଂ ଯୋଗୀ ଉଭୟ ଉଲଗ୍ନ; କାହାରିଠାରେ ସ୍ତ୍ରୀ ପୁରୁଷ ଭେଦଜ୍ଞାନ ନାହିଁ । ମାତ୍ର ପାଗଳ ସ୍ତ୍ରୀ ଓ ପୁରୁଷ ମଧ୍ୟରେ ଯେ ସ୍ଥୂଳ ପ୍ରଭେଦ ଅଛି, ଏହା

ଜାଣି ପାରେ ନାହିଁ, ଏଣୁ ସେ ଉଲଗ୍ନ ; ଯୋଗୀ ସ୍ତ୍ରୀ ଓ ପୁରୁଷ ମଧ୍ୟରେ ସୂକ୍ଷ୍ମ ସ୍ତରରେ କୌଣସି ପ୍ରଭେଦ ନାହିଁ ବୋଲି ସମ୍ପୂର୍ଣ୍ଣ ଭାବରେ ଜାଣି ପାରନ୍ତି, ଏଣୁ ସେ ଉଲଗ୍ନ । ପାଗଳ ଏବଂ ଯୋଗୀ ମାଟି ଓ ସୁନାକୁ ଏକା ଜିନିଷ ମନେ କରନ୍ତି ; ଗଙ୍ଗାଜଳ ଓ ଡୋବା ନର୍ଦ୍ଦମାର ଜଳ ପାଗଳ ଓ ଯୋଗୀ ଉଭୟଙ୍କ ପକ୍ଷରେ ସମାନ । ମାତ୍ର ପାଗଳ ମାଟି ଆଉ ସୁନା, ଗଙ୍ଗାଜଳ ଆଉ ନର୍ଦ୍ଦମାଜଳ ମଧ୍ୟରେ କୌଣସି ପ୍ରଭେଦ ବାରି ପାରେ ନାହିଁ । ଯୋଗୀ ପୂର୍ଣ୍ଣଭାବରେ ଜାଣନ୍ତି ଯେ ମାଟିଟା ଯେଉଁ ଉପାଦାନରେ ଗଢ଼ା, ସୁନାମୁଣ୍ଡାକ ଠିକ ସେହି ଉପାଦାନରେ ଗଢ଼ା ; ଗଙ୍ଗାପାଣି ଓ ନର୍ଦ୍ଦମାପାଣିରେ ସୂକ୍ଷ୍ମ ପାର୍ଥକ୍ୟ କିଛି ନାହିଁ । ପାଗଳ ଅଜ୍ଞାନାନ୍ଧକାରର ଶେଷ ସୀମାକୁ ଯାଇଛି ; ଯୋଗୀ ଜ୍ଞାନାଲୋକର ଶେଷ ସୀମାକୁ ଯାଇଛନ୍ତି । ଦୁହେଁ ପରସ୍ପରଠାରୁ ବିପରୀତ ପଥରେ ଯାତ୍ରା କରି ପରସ୍ପରର ନିକଟତମ ହୋଇଛନ୍ତି ; ମାତ୍ର କେହି କାହାରି ସଙ୍ଗରେ ମିଳି ପାରି ନାହାନ୍ତି । ଦୁହିଙ୍କ ମଧ୍ୟରେ ସୂକ୍ଷ୍ମତମ ପ୍ରଭେଦ ବିଦ୍ୟମାନ । ଏହି ସୂକ୍ଷ୍ମ ପ୍ରଭେଦ ହେତୁ ପାଗଳ ପାଗଳ ହୋଇ ରହିବ, ଯୋଗୀ ଯୋଗୀ ହୋଇ ରହିବ । ପାଗଳ ବିମୂଢ଼ଭାବରେ ମାନସିକ ଦ୍ୱନ୍ଦ୍ୱର ପ୍ରବଳତମ କବଳରେ ପଡ଼ି ତୀବ୍ରତମ ମାନସିକ ଯନ୍ତ୍ରଣା ଭୋଗ କରି ଶେଷରେ ସମ୍ପୂର୍ଣ୍ଣଭାବରେ ଚେତନା ହରାଇ ଅଛି ; ଚେତନାଶକ୍ତି ହରାଇବାରୁ ତାହାର ଯନ୍ତ୍ରଣାବୋଧ ମଧ୍ୟ ତିରୋହିତ ହୋଇଅଛି । ପାଗଳର ବର୍ତ୍ତମାନ ସୁଖବୋଧ ନାହିଁ କି ଦୁଃଖବୋଧ ବି ନାହିଁ, ମାତ୍ର ଯୋଗୀ ଚେତନାଶୀଳଭାବରେ ସ୍ଥୂଳ ସୁଖ ଦୁଃଖ, ହର୍ଷ ବିଷାଦ, ଶୀତ ଗ୍ରୀଷ୍ମବୋଧ ପ୍ରଭୃତି ଦ୍ୱନ୍ଦ୍ୱମାନଙ୍କୁ ବର୍ଜିତ କରିବାକୁ ଚେଷ୍ଟା କରି ନିରବଚ୍ଛିନ୍ନ ଆନନ୍ଦଲହରୀରେ ଭାସି ଯାଇ ଯାଇ ଶେଷରେ ଦ୍ୱନ୍ଦ୍ୱାତୀତ ସମାଧି (Superconsciousness) ଲାଭ କରିଅଛି ; ଯୋଗୀର

ବର୍ତ୍ତିମାନ ସୁଖବୋଧ ନାହିଁ କି ଦୁଃଖବୋଧ ନାହିଁ, ମୂର୍ଚ୍ଛାରେ ବା ସମ୍ମୋହିତ ଅବସ୍ଥାରେ (Hypnotic stage) କେହି ରୋଗ-ଯନ୍ତ୍ରଣା ଅନୁଭବ କରି ନ ପାରିବା ପରି ପାଗଳ ଅଚେତନ ସ୍ତରରେ ଥିବାରୁ ତାହାର ଯନ୍ତ୍ରଣାବୋଧ ହୋଇ ପାରୁ ନାହିଁ । ପ୍ରବଳତମ ଆନନ୍ଦବୋଧ ବା ସମାହିତ ଅବସ୍ଥାରେ ( In Trance ) କେହି ରହିଲେ ତାହାର ଯେପରି ଆନନ୍ଦବୋଧ ଲୋପ ହୋଇଯାଏ, ଯୋଗୀ ପୂର୍ଣ୍ଣ ଚେତନାସ୍ତରରେ ଥିବାରୁ ତାହାର ଆନନ୍ଦବୋଧ ସମାଧିରେ ମଗ୍ନ (Merged) ହୋଇ ଯାଇଛି ।

ଏଣୁ ସୂକ୍ଷ୍ମଭାବରେ ବିକୃତ ପରପୀଡ଼ିକ ଓ ସମାଜହିତୈଷୀ ବିଦ୍ରୋହୀ ବିପ୍ଳବୀର ଆଚରଣକୁ ବିଶ୍ଳେଷଣ କଲେ ଦେଖିବା ଯେ ପାଗଳ ଓ ଯୋଗୀର ଆଚରଣ ସ୍ଥୂଳଦୃଷ୍ଟିରେ ଏକା ପରି ଦେଖାଯିବ । ଏ ଦୁହିଙ୍କର ଆଚରଣ ଏକାପରି ଦେଖାଗଲେ ମଧ୍ୟ ପରପୀଡ଼ିକ ପାଗଳା ଗାରଦର ଅଭିମୁଖୀ ଏବଂ ଚେତନାଶୀଳ ବିପ୍ଳବୀ ଯୋଗପଥର ଯାତ୍ରୀ । ଦୁହେଁ ବିଦ୍ରୋହୀ ହୋଇ ସମାଜର ବକ୍ଷରେ ରକ୍ତନଦୀ ବୁହାଇ ପାରନ୍ତି, କୁରୁକ୍ଷେତ୍ର ସୃଷ୍ଟି କରି ପାରନ୍ତି; ମାତ୍ର ଏ ଦୁହିଙ୍କ ମଧ୍ୟରୁ ଜଣେ ହେଉଛି ଶକୁନିର କୁମନ୍ତ୍ରଣାଗ୍ରସ୍ତ ନିର୍ମମ (Cruel) ପରପୀଡ଼ିକ ଦୁର୍ଯ୍ୟୋଧନ, ଅନ୍ୟଜଣକ ଶ୍ରୀକୃଷ୍ଣଙ୍କ ଉପଦେଶରେ ନିର୍ମମ (Unatached) ଯୋଗୀ ପାଲଟି ଯାଇଥିବା ଅର୍ଜୁନ । ଜଣେ ହେଉଛି ବିପ୍ଳବୀ ଲେନିନ ଅନ୍ୟ ଜଣକ ନିଷ୍ଠୁର ନେରୋ (Nero) ।

ମାନବଜାତି ପ୍ରତି ଗୋଟାଏ ପ୍ରବଳ ଘୃଣା ଓ ଅବଜ୍ଞା (Mis-anthrophy) ପରପୀଡ଼ିକ ବିକୃତିର ଅନ୍ୟ ଏକ ଲକ୍ଷଣ । ରୋମ୍ ସମ୍ରାଟ ନେରୋ ଏହାର ଜ୍ୱଳନ୍ତ ଦୃଷ୍ଟାନ୍ତ । ଉକ୍ତ ପରପୀଡ଼ିକ ବ୍ୟକ୍ତିମାନେ ମଣିଷର ଦୁଃଖ ଯନ୍ତ୍ରଣା ଦେଖି ଖୁସି ହୁଅନ୍ତି । କୌଣସି

ଲୋକ ବୁଡ଼ି ମରିଲେ ପରପୀଡ଼କ କହେ, "ଭଲ ହୋଇଛି, ନଈ-ବନ୍ଧରେ ଅସାବଧାନ ଭାବରେ ଗୁଳୁଥିଲା ଯେପରି, ତାହାର ଫଳ ପାଇଲା ସେପରି।" ଅବନ୍ଧଶୀଳ ପରପୀଡ଼କର ଧାରଣାରେ ସବୁ ମଣିଷ ପାଜି, ସଇତାନ, ଠକ। ଠିକ୍‌ଏ ରାଜନୈତିକ ଚେତନା ଥିଲେ ସେ ଭାବେ ଯେ ସବୁ କଂଗ୍ରେସିଆ ପାଜି ଠକ ଓ ବଗଲା ବୈଷ୍ଣବ; ସବୁ ସାମ୍ୟବାଦୀ ଓ କମ୍ୟୁନିଷ୍ଟ ପାଜି ଓ ନରହନ୍ତା ଇତ୍ୟାଦି।

ପରପୀଡ଼ାବିକୃତିଗ୍ରସ୍ତ ବ୍ୟକ୍ତି ସାମାନ୍ୟ କାରଣରେ ଖପା ହୋଇପଡ଼େ; ସାମାନ୍ୟ କଥାରେ ଅନ୍ୟଙ୍କୁ ଗାଳି ଫଜିତ କରିବା ବା ଅଭିଶାପ ଦେବା ପରପୀଡ଼କର ଗୋଟାଏ ଲକ୍ଷଣ। କାହାରି କାହାରି ନିର୍ଦ୍ଦିଷ୍ଟ ବୟସ, ଦିନର ନିର୍ଦ୍ଦିଷ୍ଟ ସମୟ, ନିର୍ଦ୍ଦିଷ୍ଟ ଋତୁ ଏବଂ ନିର୍ଦ୍ଦିଷ୍ଟ ସ୍ଥାନରେ ଏହି ବିକୃତି ଦେଖାଯାଏ। ଅନେକ ବୃଦ୍ଧବୟସରେ ବା ରୁଗ୍‌ଣାବସ୍ଥାରେ କଳହପ୍ରିୟ ହୋଇପଡ଼ନ୍ତି। ଅନ୍ୟର ପ୍ରତିବାଦ ବା ସମାଲୋଚନା ପରପୀଡ଼କ ସହି ପାରେ ନାହିଁ। ଏପରି କେତେକ ବିକୃତିଗ୍ରସ୍ତ ବ୍ୟକ୍ତି ଅଛନ୍ତି, ସେମାନଙ୍କୁ ଅନ୍ୟର ବୃଦ୍ଧି ଅସହ୍ୟ ବୋଧ ହୁଏ; ଅନ୍ୟଙ୍କୁ ଦେଖିବା ମାତ୍ରେ ସେମାନେ କ୍ରୋଧରେ ଜଳି ଯାଆନ୍ତି ଏବଂ ଗାଳି ଦେବାକୁ ବା ମାରିବାକୁ ଉଦ୍ୟତ ହୁଅନ୍ତି।

ପରପୀଡ଼କର ଆଦେଶକୁ କେହି ଅବମାନନା କରିବା ବିପଦ୍‌ଜନକ। ଆଦେଶ ଅମାନ୍ୟକାରୀ ପ୍ରତି ପରପୀଡ଼କ ନିଷ୍ଠୁର, କ୍ରୁଦ୍ଧ ଓ ହିଂସ୍ରକ ହୋଇପଡ଼େ। ପରପୀଡ଼କ ନିଜକୁ ସର୍ବେସର୍ବା ବା ଏକଛତ୍ର (Dictatorial) ମନେ କରେ। ସେ ଯାହା କହେ ବା କରେ ତାହାହିଁ ସେ ସମସ୍ତଙ୍କ ପକ୍ଷେ ଅକାଟ୍ୟ ଓ ବେଦର ଗାର ବୋଲି ମନେ କରେ। "କାଳୀ ଗାଈର ଭଳି ଗୋଠ" ପରି ସମସ୍ତେ

ଯେଉଁ ବାଟରେ ଯାଆନ୍ତି ପରପୀଡ଼କ ଠିକ ତାହାର ଓଲଟା ବାଟରେ ଯାଏ ଏବଂ ସେହି ବାଟରେ ସମସ୍ତଙ୍କୁ ଯିବାପାଇଁ ବାଧ୍ୟ କରେ । କୌଣସି ଅପ୍ରୀତିକର ଘଟଣା ଘଟିଲେ ବା କୌଣସି ଦୁଃସ୍ୱପ୍ନ ଦେଖିଲେ ସାରା ଦିନଟାଯାକ ପରପୀଡ଼କ ଅନ୍ୟ ଉପରେ ବିରକ୍ତ ହୁଏ; ଅନ୍ୟକୁ ଗାଳି ଦିଏ ବା ମାରଧର କରେ । ପରପୀଡ଼ା-ବିକୃତିଗ୍ରସ୍ତା ସ୍ତ୍ରୀ ଗର୍ଭୋଦୟ ସମୟରୁ ପ୍ରସବକାଳ ପର୍ଯ୍ୟନ୍ତ କ୍ରୋଧଶୀଳା ଓ କଳହପ୍ରିୟା ହୋଇପଡ଼େ ।

ପରପୀଡ଼କର ବିକୃତ ମନୋମନ୍ଦିରରେ ହିଂସାର ତାଣ୍ଡବ ନୃତ୍ୟ ହେଉଥାଏ । କ୍ରୋଧର ଅଗ୍ନି ତାହାର ସବୁ ମାୟା, ମମତା ଓ ସ୍ନେହକୁ ପୋଡ଼ି ଛାରଖାର କରିଦିଏ । ପୁଣି କ୍ରୋଧରେ ତାହାର ପିତାକୁ, ସ୍ୱାମୀ ତାହାର ସ୍ତ୍ରୀକୁ ବା ସ୍ତ୍ରୀ ତାହାର ପ୍ରିୟତମ ସ୍ୱାମୀ ଓ ଶିଶୁଙ୍କୁ ନିର୍ଦ୍ଦୟଭାବରେ ହତ୍ୟା କରେ । ଘୋର ସଂସାରୀ ବ୍ୟକ୍ତି ହଠାତ୍ ତାହାର ଗୃହ ଓ ବିଷୟ ତ୍ୟାଗ କରି ପଳାଇଯାଏ । ଛାତ୍ରାବସ୍ଥାରେ ଶିକ୍ଷକ ବା ସଙ୍ଗୀମାନଙ୍କ ପ୍ରତି କ୍ରୁଦ୍ଧ ହୋଇ ଛାତ୍ର ସ୍କୁଲରୁ ଏବଂ ଘରୁ ନିରୁଦ୍ଦେଶ୍ୟ ହୋଇଯାଏ, ସଂସାରରୁ, ଘରୁ ବା ସ୍କୁଲରୁ ପଳାଇଯିବା ମନୋବୃତ୍ତି କେବଳ ଯେ ପରପୀଡ଼ା ବିକୃତିରୁ ଘଟେ, ତାହା ଅବଶ୍ୟ ନୁହେଁ । ମାତ୍ର କ୍ରୋଧରେ କିଂକର୍ତ୍ତବ୍ୟମୂଢ଼ ହୋଇ ନିରୁଦ୍ଦେଶ୍ୟ ହେବା ବିରଳ ନୁହେଁ ।

ଆତ୍ମପୀଡ଼ା-ବିକୃତି ପରପୀଡ଼ା-ବିକୃତିର ଠିକ ବିପରୀତ । ପରପୀଡ଼କ ଅନ୍ୟକୁ ପୀଡ଼ା ଦିଏ, ଅନ୍ୟକୁ ଗାଳି ଦିଏ ବା ଅନ୍ୟକୁ ହତ୍ୟା କରେ; ମାତ୍ର ଆତ୍ମପୀଡ଼କ ତାହାର କ୍ରୋଧର ହାତ ନିଜ ଉପରେ ସାରେ । ସେ ନିଜେ କଷ୍ଟ ସହେ, ନିଜର ଶରୀରକୁ ପୀଡ଼ା ଦିଏ; ନିଜକୁ ନିଜେ ଗାଳି ଦିଏ । ଆତ୍ମହତ୍ୟା କରିବା ଆତ୍ମପୀଡ଼ା

ଉନ୍ମାଦର ଶେଷ ପରିଣତି । ସମ୍ବାଦପତ୍ରରେ ଆଜକାଲି ଆତ୍ମହତ୍ୟାର ସମ୍ବାଦ ବହୁତ ବାହାରୁଛି; ଏହି ଆତ୍ମହତ୍ୟା ଆତ୍ମପୀଡ଼ା-ବିକୃତିରୁ ଘଟେ । ଆତ୍ମପୀଡ଼କ ନିଜ ଲୁଗାରେ ନିଜେ ନିଆଁ ଲଗାଇ ଦିଏ; ନିଜ ଗଳାରେ ରସି ବା ରୁମାଲ ବାନ୍ଧି ରୁଦ୍ଧଶ୍ୱାସ ହୋଇ ମରିଯାଏ ; କୂଅ ପୋଖରୀକୁ ଡେଇଁପଡ଼େ ବା ଆତ୍ମହତ୍ୟା ଉଦ୍ଦେଶ୍ୟରେ ବିଷଭକ୍ଷଣ କରେ । କ୍ରୋଧରେ ଅସ୍ଥିର ହେଲେ ଆତ୍ମପୀଡ଼କ ଆତ୍ମହତ୍ୟା କରିବାକୁ ଧମକ ଦେଖାଏ କିମ୍ବା ଆତ୍ମହତ୍ୟା କରିବାର ଅଭିନୟ କରେ; ଏହିପରି ବ୍ୟକ୍ତିମାନଙ୍କର ଆତ୍ମହତ୍ୟା କରିବାକୁ ଡର ଥାଏ, କେବଳ ଅନ୍ୟକୁ ଜବତ କରିବା ପାଇଁ ସେମାନେ ଆତ୍ମହତ୍ୟାର ଅଭିନୟ ବା ଛଳନା କରନ୍ତି । ଏଣୁ ଯେତିକି ପରିମାଣରେ ଅଫିମ ବା ମନ୍ଦୁରି ବିଷ ଖାଇଲେ ପ୍ରାଣନାଶ ଘଟିବାର ସମ୍ଭାବନା, ତାହାଠାରୁ ଢେର କମ ପରିମାଣର ବିଷ ଭକ୍ଷଣ କରି ସେମାନେ ଯନ୍ତ୍ରଣାରେ ଅସ୍ଥିର ହୁଅନ୍ତି । ଆତ୍ମପୀଡ଼କ କାହାରି ସଙ୍ଗରେ ତର୍କବିତର୍କ ଓ କଳହ କରି ଶେଷରେ ଯେତେବେଳେ ପରାସ୍ତ ହୁଏ, ନିଜର କାଇଲ ହେବାରୁ କ୍ରୋଧରେ ନିଜର ଗାଲରେ ନିଜେ ଗୁଡ଼ୁପା ମାରି ଦୁର୍ଜୟ ଅଭିମାନରେ ନିଜ ଦୋଷ ହୋଇଛି ବୋଲି ସ୍ୱୀକାର କରେ । ଆତ୍ମପୀଡ଼କ-ବିକୃତିଗ୍ରସ୍ତ ପିତା ବା ମାତା ନିଜର ସନ୍ତାନ ଗୋଡ଼ତଳେ ପଡ଼ି କ୍ଷମା ଲୁଚନ୍ତି । ଶିକ୍ଷକ ଏହି ବିକୃତି-ଗ୍ରସ୍ତ ହେଲେ ଛାତ୍ରମାନଙ୍କ ଆଗରେ ଅଭିମାନରେ ଆପଣା ଦୋଷ ସ୍ୱୀକାର କରି କ୍ଷମା ପ୍ରାର୍ଥନା କରେ । ଶିଶୁ ରାଗିଲେ ନିଜର ମୁଣ୍ଡ କୋଡ଼ି ଜନକ ଜନନୀଠାରୁ ଈପ୍ସିତ ବସ୍ତୁ ବା ଦାବି ହାସଲ କରେ । ଆତ୍ମପୀଡ଼କ ଟିକିଏ କଥାରେ ରୁଷି ବସେ, ଅଭିମାନ କରେ, ଉପବାସ କରେ, କାନ୍ଦି ପକାଏ, ବିଛଣାରେ ମୁହଁ ମାଡ଼ି ଶୋଇ ରହେ, ନିଜର ଏହିପରି ବିକୃତ ରୀତିଦ୍ୱାରା ସେ ପରିବାରର ଅନ୍ୟ ସମସ୍ତଙ୍କୁ ପ୍ରପୀଡ଼ିତ

କରିବ । ଅନ୍ୟ ଉପରେ କ୍ରୋଧ କରି ସେ ଏହି କ୍ରୋଧକୁ ନିଜ ଉପରେ ପ୍ରୟୋଗ କରି ଅନ୍ୟକୁ ଜବତ କରିବାକୁ ଚାହେଁ । ଛାତ୍ର ନିଜର ସଙ୍ଗୀ ବା ଶିକ୍ଷକଙ୍କ ଉପରେ ଚିଡ଼ିଲେ ରାଗରେ ନିଜର ବହିପତ୍ର ଚିରି ପକାଏ, ନିଜର ଦୁଆତ କଲମ ଭାଙ୍ଗି ପକାଏ । ଶିଶୁ ନିଜର ମାଆ ଉପରେ ରାଗିଲେ ଆପଣା ଖେଳଣାକୁ ଭାଙ୍ଗି ପକାଏ ।

ସାମାନ୍ୟ କାରଣରେ ଆତ୍ମପୀଡ଼କ ଅନୁତାପ କରେ, ଅଶ୍ଳୀଳ ଭାଷାରେ ନିଜକୁ ନିଜେ ଗାଳିଦିଏ । କ୍ରୋଧ ଓ ଅନୁଶୋଚନାରୁ ନିଜର ହାତ ଓ ଅଙ୍ଗୁଳିକୁ ଦଂଶନ କରେ । ସ୍ତ୍ରୀ ନିଜର ଶାଶୁ, ସ୍ୱାମୀ ବା ସନ୍ତାନ ଉପରେ ରାଗିଲେ ମୁଣ୍ଡ କୋଡ଼ ହୁଏ ଏବଂ ନିଜର କେଶାକର୍ଷଣ କରେ । ଆତ୍ମପୀଡ଼କ ପରପୀଡ଼କ ପରି ଅବାଧ୍ୟ ଓ ଜିଦିଖୋର । ଗୃହରେ ଏବଂ ସ୍କୁଲରେ ସେ ପିତା ମାତା ଓ ଶିକ୍ଷକଙ୍କ ବିରୁଦ୍ଧରେ ଅବାଧ୍ୟତା ଓ ବିଦ୍ରୋହ ମନୋବୃତ୍ତି ଦେଖାଏ । ମାତ୍ର ଏହି ଅବାଧ୍ୟତା ଓ ବିଦ୍ରୋହ-ମନୋବୃତ୍ତି ଫଳରେ ସେ ଅନ୍ୟକୁ କଷ୍ଟ ନ ଦେଇ ନିଜକୁ କଷ୍ଟ ଦିଏ ଏବଂ ନିଜର ପଦାର୍ଥମାନଙ୍କୁ ଧ୍ୱଂସ କରେ । ପରପୀଡ଼କ ଯେପରି ଅର୍ଥଲୋଭୀ, କୃପଣ ଓ କାଞ୍ଚନାସକ୍ତ ହୁଏ, ଆତ୍ମପୀଡ଼କ ସେହିପରି ବିକୃତଭାବରେ ମୁକ୍ତହସ୍ତ ଓ ବଦାନ୍ୟ ହୋଇ ପଡ଼େ ଏବଂ ଏହି ବିକୃତ ମୁକ୍ତହସ୍ତତା ଓ ବଦାନ୍ୟତା ଯୋଗୁ ସେ ଅନେକ ସମୟରେ ଋଣଗ୍ରସ୍ତ ହୁଏ । ବାଳକ ନିଜ ପିତାର ଟଙ୍କା ବାକ୍ସରୁ ଟଙ୍କା ଚୋରି କରି ଅପରକୁ ଦାନ କରେ । ଛାତ୍ର ନିଜର ଖାତା କଲମ ପୁସ୍ତକାଦି ଅନ୍ୟକୁ ଦେଇଦିଏ । ଏହି ପ୍ରକାର ଦାନ ବିକୃତ, ଏଥିରେ ହୃଦୟର ଉଦାରତା ଓ ବିଚାରବୁଦ୍ଧି ନ ଥାଏ । ଭିକ୍ଷୁକ ଦ୍ୱାରରୁ ଭିକ୍ଷା ନ ପାଇ ଫେରିଗଲେ ଆତ୍ମପୀଡ଼କ ସ୍ତ୍ରୀ ନିଜର ସ୍ୱାମୀ ଉପରେ ରାଗିକରି ଉପବାସ କରେ ।

ଗବଦ ପିତା ତାହାର ପୁତ୍ରର ବିବାହକିଯ୍ଆକୁ ଜାକଜମକ ସହିତ ନ କଲେ, ଢୋଲ, ଝମକ ନିଶାଣାଦିର ଅୟୋଜନ ନ କଲେ କିମ୍ବା ଭୂରିଭୋଜନ ନ କରାଇଲେ ପୁତ୍ରର ଜନନୀ ନିଜର ସ୍ୱାମୀଉପରେ କ୍ରୁଦ୍ଧା ହୋଇ ଉପବାସ କରେ, ବିଳାପ କରି ସ୍ୱାମୀର କୁଗୁଣମାନ ପ୍ରତିବେଶିନୀଙ୍କ ନିକଟରେ ପ୍ରକାଶ କରେ । ପୁରୁଣା କଥା, ପୁରୁଣା ଢଙ୍ଗଢାଙ୍ଗ, ପ୍ରଥା, ବିଶ୍ୱାସ ଓ ସମାଜର ଆଦବକାଏଦାର ବିଶେଷ ପକ୍ଷପାତୀ ହୁଏ, ଏହି ଆତ୍ମପୀଡ଼କ । ଆମ ବାପ ଅଜା ଯେପରି ଭାବରେ ଚଳୁଥିଲେ ସେହିପରି ଚଳିବାକୁ ଆତ୍ମପୀଡ଼କ ବିଶେଷ ଗୌରବର କଥା ମନେ କରେ । ପରପୀଡ଼କ ସମାଜର ପୁରାତନ ପ୍ରଥା ଓ ଆଦବକାଏଦାକୁ ବିଦ୍ରୂପ କରେ, ପଦଦଳିତ କରେ, ଏମାନଙ୍କ ବିରୁଦ୍ଧରେ ବିଦ୍ରୋହୀ ହୁଏ । ମାତ୍ର ଆତ୍ମପୀଡ଼କ ଏମାନଙ୍କୁ ଅନ୍ଧଭାବରେ ମାନି ଚଳେ ଏବଂ ଏମାନଙ୍କୁ ରକ୍ଷା କରିବାକୁ ନିଜର ପ୍ରାଣପାତ କରେ । ପରପୀଡ଼କ ଧର୍ମ କର୍ମ ମାନେ ନାହିଁ, ଦେବ ଦେବୀ ବିଶ୍ୱାସ କରେ ନାହିଁ, ସେ ଘୋର ନାସ୍ତିକ, ତାହାର ନାସ୍ତିକତାରେ କୌଣସି ବିଚାରବୁଦ୍ଧି ଓ ହେତୁବୋଧ ନ ଥାଏ । ଆତ୍ମପୀଡ଼କ ଅନ୍ଧଧର୍ମବିଶ୍ୱାସୀ, ଧର୍ମୋନ୍ମତ୍ତ ଏବଂ ବିକୃତ ରକ୍ଷଣଶୀଳ । ନିଜର ଧର୍ମ ଓ ବିଶ୍ୱାସକୁ ସେ ସର୍ବଶ୍ରେଷ୍ଠ ଓ ଅକାଟ୍ୟ ମନେ କରେ । ଆତ୍ମପୀଡ଼କ ଆତ୍ମହତ୍ୟା କରେ, ମାତ୍ର ନିଜର ବିଶ୍ୱାସକୁ ଛାଡ଼େ ନାହିଁ ।

ବିପ୍ଳବୀ ଦୁଇ ଶ୍ରେଣୀର—ହିଂସାବିପ୍ଳବୀ ଓ ଅହିଂସବିପ୍ଳବୀ । ଯିଶୁ, ବୁଦ୍ଧ, ଚୈତନ୍ୟ ଓ ମହାତ୍ମା ଗାନ୍ଧି ପ୍ରଭୃତି ମହାପୁରୁଷମାନେ ଏହି ଦ୍ୱିତୀୟ ଶ୍ରେଣୀର ବିପ୍ଳବୀ । ନିଜର ଅଦ୍ଭୁତ ଧୈର୍ଯ୍ୟ, କଷ୍ଟସହିଷ୍ଣୁତା ଓ ଆତ୍ମତ୍ୟାଗବଳରେ ବିନାରକ୍ତପାତରେ ଏମାନେ ସାମାଜିକ ବିପ୍ଳବ ଓ ରାଷ୍ଟ୍ରବିପ୍ଳବ କରାଇ ପାରନ୍ତି । ଆତ୍ମପୀଡ଼ା ବିକୃତଗ୍ରସ୍ତ ବ୍ୟକ୍ତିର

ଆଚରଣସହ ଅହଂସର୍ବସ୍ବବାଦୀର ଆଚରଣର ସାଦୃଶ୍ୟ ଅଛି । ମାନବ ପ୍ରକୃତିରେ ପରପୀଡ଼କ ପରି ଆତ୍ମପୀଡ଼କ ଅର୍ଦ୍ଧଚେତନାଗ୍ରସ୍ତ ଏବଂ ଅହଂସର୍ବସ୍ୱ ସମାଧିଶକ୍ତିସମ୍ପନ୍ନ ( Superconscious ) ।

ପୁରୁଷମାନଙ୍କ ମଧ୍ୟରେ ପରପୀଡ଼କ ବେଶୀ ଦେଖାଯାନ୍ତି ଏବଂ ଆତ୍ମପୀଡ଼କମାନଙ୍କ ମଧ୍ୟରେ ଅଧିକାଂଶ ପ୍ରାୟ ସ୍ତ୍ରୀଲୋକ । ମାଇଚିଆ ପୁରୁଷ ଗୋଟିଏ ଆତ୍ମପୀଡ଼ାବିକୃତିଗ୍ରସ୍ତ ବ୍ୟକ୍ତି, ମାତ୍ର ଅଣ୍ଡିରାଚଣ୍ଡୀ ସ୍ତ୍ରୀଲୋକ ପରପୀଡ଼କ ହୋଇଯାଏ । କୌଣସି ପୁରୁଷ ଯେ ମାଇଚିଆ ହୋଇଯାଏ ବା କୌଣସି ସ୍ତ୍ରୀଲୋକ ଯେ ଅଣ୍ଡିରାଚଣ୍ଡୀ ହୋଇଯାଏ, ତାହାର କାରଣ ଅବଶ୍ୟ ପରପୀଡ଼ାବିକୃତି ବା ଆତ୍ମପୀଡ଼ାବିକୃତି ନୁହେଁ ।

---

## ତୃତୀୟ ପରିଚ୍ଛେଦ

## ଦ୍ୱିରୂପା ଓ ବହୁରୂପା

## (Dual personality and Multiple personality)

ମାନସିକ ବିକୃତିର କବଳରେ ପଡ଼ି ମଣିଷ ଅନେକ ସମୟରେ ଦୁଇଟା ରୂପ ଧରେ; ଗୋଟାଏ ବାହାରିଆ ରୂପ ଓ ଗୋଟାଏ ଭିତରିଆ ରୂପ। ଗୋଟାଏ ହେଉଛି ସମାଜକୁ ଠକିବାର ରୂପ—ଅନ୍ୟଟା ହେଉଛି ତାହାର ନିଜର ପ୍ରକୃତ ରୂପ। ବାଳକ ପିତାମାତାଙ୍କ ତାଡ଼ନାରେ ଓ ଶାସନଭୟରୁ ବାହାରକୁ ବେଶ ଶାନ୍ତ ଶିଷ୍ଟ ଓ ନିରୀହ ଦେଖାଯାଏ ; ମାତ୍ର ପିତାମାତାଙ୍କ ଅସାକ୍ଷାତରେ ଗୋପନରେ ଏପରି ଅନେକ କାର୍ଯ୍ୟ କରେ, ଯାହା କି ସେ ସେମାନଙ୍କ ଆଗରେ କହିବାକୁ ସାହସ କରନ୍ତା ନାହିଁ। ଛାତ୍ର ଶିକ୍ଷକ ଆଗରେ ବେଶ ଭଦ୍ର, ବିନୟୀ ଓ ଭକ୍ତିପରାୟଣ ଦେଖାଯାଏ, ମାତ୍ର ଶିକ୍ଷକଙ୍କର ଅନୁପସ୍ଥିତିରେ ତାହାଙ୍କୁ ତୁଚ୍ଛ ତାଚ୍ଛିଲ୍ୟ, ବ୍ୟଙ୍ଗବିଦ୍ରୂପ କରେ। ବାହାରକୁ ଲୋକଟି ବେଶ ମାର୍ଜିତରୁଚିସମ୍ପନ୍ନ, ଉଦାର ଓ ସ୍ୱାର୍ଥତ୍ୟାଗୀ ଦେଖାଯାଏ, ମାତ୍ର ଭିତରେ ସେ ଭଣ୍ଡ, ସ୍ୱାର୍ଥପର ଓ ଭୟଙ୍କର ପାଜି। ବାହାରେ ଲୋକ ବହୁତ ବଡ଼ ବଡ଼ କଥା କହେ, ସମାଜର ନେତୃତ୍ୱ ନିଏ ; ମାତ୍ର ଘରେ ନିଜର ସ୍ତ୍ରୀ ପାଖରେ ତାହାର ଏହି ବଡ଼ କଥା ସବୁ ପାଣି ଫାଟିଯାଏ ; ସେ ମେଣ୍ଢା ବନିଯାଏ, ସଭାରେ ସେ ଅସ୍ପୃଶ୍ୟତା ବିରୁଦ୍ଧରେ ଅଭିଯାନ କରେ, ପାଣ କଣ୍ଡରା ସାଙ୍ଗରେ ପଂକ୍ତି-ଭୋଜନ କରେ ; ମାତ୍ର ଦ୍ୱାରବନ୍ଦ ହେଇ ଘରେ ପ୍ରବେଶ କଲାକ୍ଷଣି ଏ ବୈପ୍ଳବିକ ଧାରଣା ଏକାବେଳକେ ଉଭେଇଯାଏ।

ଦୁଇଟି ପ୍ରବଳ ଇଚ୍ଛାର ସଂଘର୍ଷରୁ, ଭୟରୁ ବା ବିବେକର ତାଡ଼ନାରୁ ମଣିଷ ଦୁଇଟା ରୂପ ଧରିବାକୁ ବାଧ୍ୟ ହୁଏ; ଗୋଟାଏ ଗୋପନ ରୂପ, ଆଉ ଗୋଟାଏ ହେଉଛି ପ୍ରକାଶ୍ୟ ରୂପ । ମନେ କର, ଜଣେ ଲୋକର ବିବେକ କହିଲା, "ଅସ୍ପୃଶ୍ୟତା ମହାପାପ, ବ୍ରାହ୍ମଣ ଓ ପାଣର ରକ୍ତ ର ଭିତରେ କୌଣସି ପ୍ରଭେଦ ନାହିଁ ।" ବିବେକର ଏହିବିଧ ନିର୍ଦ୍ଦେଶରେ ଉକ୍ତ ଲୋକ ପାଣକୁ ଛୁଇଁବାରେ ବା ପାଣହାତରୁ ଖାଇବାରେ ଦ୍ୱିଧାବୋଧ କଲା ନାହିଁ । ମାତ୍ର ଉକ୍ତ ଲୋକର ସ୍ତ୍ରୀର କୁସଂସ୍କାର ଏପର୍ଯ୍ୟନ୍ତ ଯାଇ ନାହିଁ ; ସେ ତାର ସ୍ୱାମୀର ଆଚରଣକୁ ପସନ୍ଦ କଲା ନାହିଁ ; ପାଣକୁ ଛୁଇଁବାକୁ ବା ପାଣ ହାତରୁ ଖାଇବାକୁ ସେ ତାହାର ସ୍ୱାମୀକୁ ନିଷେଧ କଲା । ସ୍ତ୍ରୀର ଶାସନ ଓ ବିବେକର ଶାସନ ମଧ୍ୟରେ ସଂଘର୍ଷ ଉପସ୍ଥିତ ହେଲା ; ଉକ୍ତ ସଂଘର୍ଷ ଫଳରେ ତାହାର ମନୋରାଜ୍ୟର ଦୁଇ ବିଭିନ୍ନ କେନ୍ଦ୍ରକୁ ଦୁଇ ଶାସନ ଅଧିକାର କରି ରହିଲେ । ଏହାର ଫଳରେ ଘରେ ଏବଂ ବାହାରେ ତାହାର ଦୁଇ ପ୍ରକାର ବିଭିନ୍ନ ଆଚରଣ ଦେଖାଗଲା । ଘରେ ସେ ସ୍ତ୍ରୀଭୟରେ ପାଣକୁ ଛୁଇଁଲା ନାହିଁ । ବାହାରେ ଦୁର୍ବଳ ବିବେକର ତାଡ଼ନାରେ ସେ ଛୁଆଁ ଛୁତ ବାଛିଲା ନାହିଁ । ଦୁଇଟା ପ୍ରବଳ ଇଚ୍ଛାର ସଂଘର୍ଷରୁ ମନର ଏକତା ନଷ୍ଟ ହୋଇଯାଏ ; ବ୍ୟକ୍ତିତ୍ୱ ଦ୍ୱିଧା ବିଭକ୍ତ ହୋଇଯାଏ ; ମନୋରାଜ୍ୟରେ ଦୁଇଟା ଶାସନ ପ୍ରବର୍ତ୍ତିତ ହୁଏ । ଏହାଦ୍ୱାରା ମାନସିକ ଶକ୍ତିର ଅଯଥା ଅପବ୍ୟୟ ଘଟେ । ପରିବାରର ସମସ୍ତେ ଜଣେ ମାତ୍ର ପ୍ରବୀଣ ଅଭିଭାବକଙ୍କ କର୍ତ୍ତୃତ୍ୱାଧୀନରେ ରହିଲେ ପରିବାରର ଜୀବନ ସୁଖମୟ ଓ ସୁଶୃଙ୍ଖଳ ହୁଏ । ମାତ୍ର ଜଣେ ବ୍ୟକ୍ତି ଯଦି ଏହି କର୍ତ୍ତୃତ୍ୱକୁ ଏଡ଼ି ଦେଇ ଯଥେଚ୍ଛାଗୃହୀ ହୁଏ ତେବେ ପରିବାରର ଜୀବନରେ ଘୋର ବିଶୃଙ୍ଖଳା ପ୍ରବେଶ କରେ ; ପରିବାର ଦୁର୍ବଳ ହୋଇଯାଏ । ଦୁଇଟି ପ୍ରବଳ ଇଚ୍ଛାର ସଂଘର୍ଷରୁ

ବ୍ୟକ୍ତିର ମନରେ ସେହିପରି ବିଭ୍ରାଟ ଓ ବିଶୃଙ୍ଖଳା ଉପସ୍ଥିତ ହୁଏ । ଦୁଇ ପ୍ରବଳ ଇଚ୍ଛାର ସଂଘର୍ଷରୁ ମନର ଯେଉଁ ବିକୃତ ଘଟେ, ତାହାକୁ ଦ୍ୱିରୂପା ବ୍ୟକ୍ତିତ୍ୱ ବିକୃତ ( Dual personality ) କୁହାଯାଏ । ଏହି ବିକୃତରୁ ବ୍ୟକ୍ତିର ବ୍ୟକ୍ତିତ୍ୱ ବା ମନର ଏକତା ଦ୍ୱିଧା ବିଭକ୍ତ ହୋଇଯାଏ । ଦୁଇଟା ସଂଘର୍ଷକାରୀ ଇଚ୍ଛାର କବଳରେ ପଡ଼ି ମଣିଷ ଦୁଇଟା ରୂପ ଧରିବାକୁ ବାଧ୍ୟ ହୁଏ ; ଦୁଇଟା ପରସ୍ପରଠାରୁ ପୃଥକ୍ ଆଚରଣ ପ୍ରକାଶ କରେ । ଅନେକ ସମୟରେ ଦୁଇରୁ ଅଧିକ ପ୍ରବଳ ଇଚ୍ଛାମାନଙ୍କ ମଧ୍ୟରେ ସଂଘର୍ଷ ଘଟେ । ଏହି ସଂଘର୍ଷକାରୀ ଇଚ୍ଛାମାନଙ୍କ ମଧ୍ୟରୁ ପ୍ରତ୍ୟେକ ମନୋରାଜ୍ୟରେ ଗୋଟିଏ ଗୋଟିଏ ଅଲଗା ଅଲଗା ଶାସନକେନ୍ଦ୍ର ପ୍ରତିଷ୍ଠା କରନ୍ତି । ଏହାର ଫଳରେ ଯେଉଁ ମାନସିକ ବିକୃତ ଘଟେ ତାହାକୁ ବହୁରୂପା ବ୍ୟକ୍ତିତ୍ୱ ( Multiple personality ) କୁହାଯାଏ । ଏହି ବିକୃତ ଫଳରେ ମଣିଷର ବ୍ୟକ୍ତିତ୍ୱ ବା ମନର ଏକତା ବହୁଧା ବିଭକ୍ତ ଓ ଛିନ୍ନ ହୋଇଯାଏ ।

ପରସ୍ପରବିରୋଧୀ ଇଚ୍ଛାମାନଙ୍କ କବଳରେ ପଡ଼ିଲେ ବ୍ୟକ୍ତିତ୍ୱର ଏକତା ନଷ୍ଟ ହୋଇଯାଏ ; ମାନସିକ ପ୍ରଗତିର ପରମ୍ପରା ଛିନ୍ନ ହୋଇଯାଏ । ପ୍ରତ୍ୟେକ ବିଦ୍ରୋହୀ ଏବଂ ଅବାଧ୍ୟ ଇଚ୍ଛା ବ୍ୟକ୍ତିତ୍ୱର ଗୋଟାଏ ଗୋଟାଏ ଅଂଶ ଅଧିକାର କରି ରହନ୍ତି ଏବଂ ମନ ଓ ବିବେକର କର୍ତ୍ତୃତ୍ୱ ସ୍ୱୀକାର କରନ୍ତି ନାହିଁ । ଫଳରେ ମନ ଏବଂ ବିବେକର ବ୍ୟକ୍ତିତ୍ୱ ଉପରେ କର୍ତ୍ତୃତ୍ୱ ସଙ୍କୀର୍ଣ୍ଣ ହୋଇଯାଏ । ଗୋଟିଏ ଲୋକ ଯୋଡ଼ାଏ ରୂପରେ ଦେଖାଯାଏ ବା ବହୁରୂପରେ ଦେଖାଯାଏ । ବ୍ୟକ୍ତିତ୍ୱର ଯେଉଁ ଅଂଶଟିକ ମନ ଏବଂ ବିବେକର ଅଧୀନରେ ରହେ ତାହାକୁ ପ୍ରଥମ ବ୍ୟକ୍ତିତ୍ୱ ବା ବିବେକାଧୀନ ବ୍ୟକ୍ତିତ୍ୱ କୁହାଯାଏ; ଅନ୍ୟ ବ୍ୟକ୍ତିତ୍ୱଗୁଡ଼ିକୁ ଅପ୍ରଧାନ ବ୍ୟକ୍ତିତ୍ୱ (Secondary personalities) କୁହାଯାଏ ।

ମନ ଯଦି ଗୋଟିଏ ରାଜା ହୁଏ, ଚୈତନ୍ୟ ବା ବିବେକ ଏହି ମନର ସୁବୁଦ୍ଧିଦାତା ମନ୍ତ୍ରୀ। ଚକ୍ଷୁ, କର୍ଣ୍ଣ, ନାସିକା, ହସ୍ତପଦାଦି ବିଭିନ୍ନ ଜ୍ଞାନେନ୍ଦ୍ରିୟ ଓ କର୍ମେନ୍ଦ୍ରିୟମାନ (Sensory Nerves, Motor Nerves), ଏହି ମନର ପ୍ରଜାବର୍ଗ। ବ୍ୟକ୍ତିତ୍ୱ ବା ଚରିତ୍ରକୁହିଁ ମନର ରାଜ୍ୟ କୁହାଯାଇ ପାରେ। ମନର ଗୋଟିଏ ମାତ୍ର ପୁତ୍ର, ତାହାର ନାମ କାମ। ଏହି ପୁତ୍ର ବଡ଼ ଦୁର୍ଜୟ, କ୍ରୋଧୀ, ମୂଢ଼ (Idiot) ବିଭ୍ରମୀ (forgetful)। କାମର ସ୍ତ୍ରୀର ନାମ ତୃଷ୍ଣା। ମଣିଷମନର କୋଟି କୋଟି ଇଚ୍ଛା ଏହି କାମ ଏବଂ ତୃଷ୍ଣାର ବିଭିନ୍ନ ସନ୍ତାନ ସନ୍ତତି। ମନ୍ତ୍ରୀ ବିବେକ ଚତୁର, ପ୍ରବୀଣ ଓ ସବଳ ଥିବାଯାକେ ମନକୁ ସୁପରାମର୍ଶ ଦେଇ ସଂଯତ ରଖେ ଏବଂ ଶୃଙ୍ଖଳାରେ ରାଜ୍ୟ ଶାସନ କରେ। କାମ ଏବଂ ତାହାର ସନ୍ତାନଗଣ ଅର୍ଥାତ୍ ବିଭିନ୍ନ ଇଚ୍ଛାମାନେ ଏହି ଗଣ୍ଡଗୋଳ ଲଗାଇ ରାଜ୍ୟରେ ଅଶାନ୍ତି କରି ପାରନ୍ତି ନାହିଁ। ମାତ୍ର କାମ ବଡ଼ ଅଧୀର ଓ ବିଦ୍ରୋହୀ ପ୍ରକୃତିର; ବିବେକ ସଙ୍ଗରେ ତାହାର ଜମାରୁ ପଡ଼େ ନାହିଁ। ସେ ତାହାର ପିତା ମନକୁ ନାମମାତ୍ର ରାଜା ବୋଲି ଜ୍ଞାନ କରେ ଏବଂ ବିବେକକୁ ପ୍ରକୃତ ରାଜା ଜାଣି ଘୃଣା କରେ। ଏଣୁ ସୁଯୋଗ ସୁବିଧା ପାଇଲା କ୍ଷଣି ସେ ଇଚ୍ଛାମାନଙ୍କୁ ବିବେକ ବିରୁଦ୍ଧରେ ମତାଏ। କାମର ପ୍ରରୋଚନାରେ ଇଚ୍ଛାମାନେ ବିଦ୍ରୋହୀ ହୋଇ ଉଠନ୍ତି। ବିବେକ ସଙ୍ଗରେ ଏମାନଙ୍କର ସଂଘର୍ଷ ହୁଏ। ଏହି ବିଦ୍ରୋହୀ ଇଚ୍ଛାମାନେ ରାଜ୍ୟର ଗୋଟାଏ ଅଂଶରେ ସ୍ୱାଧୀନ ରାଜତ୍ୱ କରନ୍ତି। ଅନେକ ସମୟରେ ଏହି ବିଦ୍ରୋହୀ ଇଚ୍ଛାମାନେ ପରସ୍ପର ମଧ୍ୟରେ ଯୁଦ୍ଧ କରି ପ୍ରତ୍ୟେକ ଗୋଟିଏ ଗୋଟିଏ ସ୍ୱାଧୀନ ରାଜ୍ୟ ସ୍ଥାପନ କରନ୍ତି। ବିବେକ ବ୍ୟକ୍ତିତ୍ୱର ଯେଉଁ ଅଂଶରେ ଶାସନ କରେ ତାହାକୁ ପ୍ରଥମ ବା ପ୍ରଧାନ ବ୍ୟକ୍ତିତ୍ୱ କୁହାଯାଏ, ଅନେକ ସମୟରେ ବିଦ୍ରୋହୀ ଇଚ୍ଛା-

ମାନେ କାମର ଅଧିନାୟକତ୍ୱରେ ବିବେକର ସମଗ୍ର ରାଜ୍ୟଟିକୁ ଅଧିକାର କରି ବିବେକକୁ ଗାଦିରୁ ତଡ଼ି ଦିଅନ୍ତି । ଏପରି କ୍ଷେତ୍ରରେ କାମ ଛଦ୍ମବେଶୀ ବିବେକ ବା ଚୈତନ୍ୟ ପାଲଟି ମନରାଜ୍ୟର ମନ୍ତ୍ରୀଦାତା ହୁଏ ।

"ବିଗତ ପ୍ରଥମ ମହାଯୁଦ୍ଧରେ ଗୋଟିଏ ସୈନିକ ନିକଟରେ ବୋମା ପଡ଼ିବା ଫଳରେ ତାହାର ଚୈତନ୍ୟ ସମ୍ପୂର୍ଣ୍ଣ ଲୋପ ହୋଇଗଲା । ଯେତେବେଳେ ତାହାର ଚୈତନ୍ୟ ଫେରି ଆସିଲା, ସେତେବେଳେ ସେ ସଦ୍ୟଜାତ ଶିଶୁପରି କୁଆଁ କୁଆଁ ସ୍ୱରରେ କାନ୍ଦିଥିଲା; ତାହାର ଲଜ୍ଜାବୋଧ ସମ୍ପୂର୍ଣ୍ଣ ଲୋପ ହୋଇଥିଲା । ଏହିପରି ଭାବରେ ୨୭ ମାସ ଅତୀତ ହୋଇଗଲା । ସଦ୍ୟଜାତ ଶିଶୁର ଛଅ ସାତ ମାସ ବୟସରେ ଯେଉଁ ଯେଉଁ ମାନସିକ ବିକାଶ ଦେଖାଯିବାର କଥା, ଉକ୍ତ ସୈନିକଠାରେ ଠିକ୍ ସେହି ସେହି ବିକାଶମାନ ଦେଖାଯାଇଥିଲା । ସୈନିକଟି ପେଟେଇବାକୁ ଶିଖିଲା ଏବଂ କାନ୍ଥ ଧରି ଠିଆ ହେବାକୁ ଆରମ୍ଭ କଲା । ଦିନେ ହଠାତ୍ ତାହାର ଏହି ଶିଶୁସ୍ତରର ଚୈତନ୍ୟ ଲୋପ ହୋଇ କେତେକ ସମୟ ପରେ ପ୍ରଥମ ଚୈତନ୍ୟ ଫେରି ଆସିଥିଲା । ସେ କଥା କହିଥିଲା ଏବଂ ତାହାର ବନ୍ଧୁମାନଙ୍କୁ ଚିହ୍ନି ପାରିଥିଲା । ବୋମା ପଡ଼ିବା ଫଳରେ ତାହାର ଯେ ଚୈତନ୍ୟ ଲୋପ ହୋଇଥିଲା, ଏହା ତାହାର ବନ୍ଧୁମାନଙ୍କ ଠାରୁ ଜାଣିଥିଲା । ମାତ୍ର ତାହାର ବ୍ୟକ୍ତିତ୍ୱ ଯେ ଶିଶୁସ୍ତରକୁ ଖସି ଯାଇଥିଲା, ଏହା ସେ ବୁଝି ପାରି ନ ଥିଲା । ଏହିପରି ଅବସ୍ଥା ତାହାର କିଛି ଦିନ ରହିବା ପରେ ପ୍ରଥମ ଚୈତନ୍ୟ ଲୋପ ହୋଇଥିଲା ଏବଂ ସେ ଶିଶୁସ୍ତରକୁ ଫେରିଯାଇଥିଲା । ଏହି ଶିଶୁସ୍ତରର ଅବସ୍ଥା ୨୭ ମାସ ରହିଥିଲା । ଶିଶୁ ଯେପରି ଧୀରେ ଧୀରେ ଚାଲି ଶିଖେ, ଦିବୋଟି ଭାଷାରେ କଥା କହେ, ଉକ୍ତ ସୈନିକଠାରେ ସେହିପରି ଅବସ୍ଥା ଦେଖାଯାଇଥିଲା,

ସୈନିକଟିର ୨।୩ ବର୍ଷ ପର୍ଯ୍ୟନ୍ତ ଏହି ଶିଶୁ ଅବସ୍ଥା ଏବଂ ସ୍ୱାଭାବିକ ଅବସ୍ଥାର ଅଦଳ ବଦଳ ହୋଇ ସର୍ବଶେଷରେ ସ୍ୱାଭାବିକ ଅବସ୍ଥା ସ୍ଥାୟୀ ହୋଇଥିଲା ।'' (Macdonel's Abnormal psychology)

ପୂର୍ବୋକ୍ତ ସୈନିକର ମାନସିକ ଅବସ୍ଥାରେ ଆମ୍ଭେମାନେ ଦେଖିବାକୁ ପାଇବା ଯେ ତାହାର ସ୍ୱାଭାବିକ ଓ ଶିଶୁସ୍ତରର ଅବସ୍ଥା ଅବରୁଦ୍ଧ କାମ ଓ ପରବର୍ତ୍ତିମାନ ବିବେକ ମଧ୍ୟରେ ସଂଘର୍ଷ ଛଡ଼ା ଆଉ କିଛି ନୁହେ । ସ୍ୱାଭାବିକ ଅବସ୍ଥାକୁ ପ୍ରଥମ ବା ପ୍ରଧାନ ବ୍ୟକ୍ତିତ୍ୱ (Chief personality) କୁହାଯାଏ । ଶିଶୁସ୍ତରର ଅବସ୍ଥାକୁ ଦ୍ୱିତୀୟ ବା ଅପ୍ରଧାନ ବ୍ୟକ୍ତିତ୍ୱ (Secondary personality) କୁହାଯାଏ । ସୈନିକ ଯେପରି କି ଯୋଡ଼ିଏ ଲୋକ ପାଲଟି ଯାଇଥିଲା—ଗୋଟିଏ ସୈନିକ ଏବଂ ଅପରଟି ଶିଶୁ ।

ଦ୍ୱିରୂପୀ ବିକୃତରେ ପ୍ରଥମ ଏବଂ ଦ୍ୱିତୀୟ ବ୍ୟକ୍ତିତ୍ୱ କେହି କାହାରିକି ଜାଣି ପାରନ୍ତି ନାହିଁ । ସୈନିକ ଯେତେବେଳେ ଶିଶୁରୂପୀ ହୋଇଥିଲା, ସେତେବେଳେ ଏହି ଶିଶୁ ଜାଣି ନ ଥିଲା ଯେ ସେ ସୈନିକ । ଶିଶୁ ଯେତେବେଳେ ସୈନିକ ଅବସ୍ଥାକୁ ପୁଣି ଫେରି ଯାଇଥିଲା ସେ ଜାଣିପାରି ନ ଥିଲା ଯେ ତାହାର ଶିଶୁବିକୃତ ଘଟିଥିଲା ବୋଲି । ଅନେକ ସମୟରେ ପ୍ରଥମ ବ୍ୟକ୍ତିତ୍ୱ ଦ୍ୱିତୀୟ ବ୍ୟକ୍ତିତ୍ୱକୁ ଜାଣି ପାରେ; ମାତ୍ର ଦ୍ୱିତୀୟ ବ୍ୟକ୍ତିତ୍ୱ ପ୍ରଥମକୁ ଜାଣି ପାରେ ନାହିଁ । ବେଳେ ବେଳେ ଏପରି ହୁଏ ଯେ ଉଭୟ ବ୍ୟକ୍ତିତ୍ୱ ଉଭୟକୁ ଜାଣି ପାରନ୍ତି । ବହୁରୂପୀ ବିକୃତରେ ପ୍ରଥମ ବ୍ୟକ୍ତିତ୍ୱ ଅପ୍ରଧାନ ବ୍ୟକ୍ତିତ୍ୱ-ମାନଙ୍କ ମଧ୍ୟରୁ ପ୍ରତ୍ୟେକକୁ ଜାଣେ; ସମୟ ସମୟରେ କେହି କାହାରିକୁ ଜାଣି ପାରନ୍ତି ନାହିଁ ।

"ଗୋଟିଏ ଅଷ୍ଟ୍ରିୟାନ୍ ରମଣୀର ପ୍ରଧାନ ବ୍ୟକ୍ତିତ୍ୱକୁ ଲଗାଇ ଗୃରୋଟି ବ୍ୟକ୍ତିତ୍ୱ-ବିକୃତ ଥିଲା । ଗୋଟିଏ ବ୍ୟକ୍ତିତ୍ୱ ଜାଗ୍ରତ ଥିବା-ବେଳେ ପୂର୍ବୋକ୍ତ ସୈନିକତ୍ୱ ବ୍ୟକ୍ତିତ୍ୱ ପର—ଅନ୍ୟଗୁଡ଼ିକ ନିଦ୍ରିତ ଥାଏ । ଯେତେବେଳେ ଦ୍ୱିତୀୟ ବ୍ୟକ୍ତିତ୍ୱ ଜାଗ୍ରତ ଥାଏ, ସେତେ-ବେଳେ ଉକ୍ତ ରମଣୀର କଥାବାର୍ତ୍ତାରୁ ଜଣାଯାଏ ଯେ ସେ ପୂର୍ବଜନ୍ମରେ କେବେ ଅଷ୍ଟ୍ରିୟ ରାଜବଂଶରେ ଜନ୍ମଗ୍ରହଣ କରିଥିଲା । ଅଷ୍ଟ୍ରିୟ ରାଜବଂଶର ରେକର୍ଡ ପତ୍ରରୁ ଜଣାଯାଇଥିଲା ଯେ ଉକ୍ତ ରମଣୀର ଦ୍ୱିତୀୟ ବ୍ୟକ୍ତିତ୍ୱ ଯାହା କହୁଛି ତାହା ସତ୍ୟ ଅଟେ । ତୃତୀୟ ବ୍ୟକ୍ତିତ୍ୱର ପ୍ରକାଶବେଳେ ଉକ୍ତ ରମଣୀର ମୁଖରୁ କେତେଗୁଡ଼ିଏ ବୈଦିକ ସଂସ୍କୃତ ଶବ୍ଦ ଉଚ୍ଚାରିତ ହେଉଥିଲା; ଅଥଚ ଉକ୍ତ ରମଣୀ କୌଣସି ସଂସ୍କୃତ ଶବ୍ଦର ନାମଗନ୍ଧ ସୁଦ୍ଧା ଜାଣି ନ ଥିଲା । ଚତୁର୍ଥ ବ୍ୟକ୍ତିତ୍ୱ ଜାଗ୍ରତ ଥିବାବେଳେ ଉକ୍ତ ରମଣୀ ମଙ୍ଗଳ ଗ୍ରହକୁ ଲକ୍ଷ୍ୟ କରି ଏପରି କେତେକ ଶବ୍ଦ ଉଚ୍ଚାରଣ କରୁଥିଲା ଯେଉଁ ଶବ୍ଦମାନ ପୃଥିବୀର କୌଣସି କଥିତ ଭାଷାରେ ନ ଥିଲା ।" (**Macdonels Abnormal Psychology**) ।

ଅଷ୍ଟ୍ରିୟ ରମଣୀର ଉପରୋକ୍ତ ବହୁରୂପୀ ବ୍ୟକ୍ତିତ୍ୱରୁ ଏହାହିଁ ମାନିବାକୁ ହେବ ଯେ କୌଣସି ବ୍ୟକ୍ତିର ବର୍ତ୍ତମାନ ଜନ୍ମପୂର୍ବରୁ ବହୁତ ଜନ୍ମ ଅତୀତ ହୋଇଅଛି ଏବଂ ଭବିଷ୍ୟତରେ ତାହାକୁ ଆହୁରି ଅନେକଥର ଜନ୍ମଗ୍ରହଣ କରିବାକୁ ହେବ । ଅନ୍ୟ କଥାରେ ମଣିଷର କୌଣସି କାମନା ଅପୂର୍ଣ୍ଣ ରହିଥିବା ଯାଏ ସେ ବାରମ୍ବାର ଜନ୍ମମୃତ୍ୟୁର ସମ୍ମୁଖୀନ ହେଉଥିବ । ଫ୍ରଏଡ଼ଙ୍କ ମତରେ ଇଚ୍ଛା ଅପୂର୍ଣ୍ଣ ରହିଲେ ତାହା ମରିଯାଏ ନାହିଁ । ଅପୂର୍ଣ୍ଣ ଇଚ୍ଛା ବିବେକ ଦ୍ୱାରା ଅବରୁଦ୍ଧ ହୋଇ ଚିତ୍ତ ମଧ୍ୟରେ (**In the unconscious**

part of the mind) ଅବସ୍ଥାନ କରେ । ଏହା ଅବିନାଶୀ । ତାହା ହେଲେ ଫ୍ରଏଡ଼ଙ୍କ ମତରୁ କଣ ଏହାହିଁ ବୁଝିବାକୁ ହେବ ଯେ ସ୍ଥୂଳ ଶରୀରର ବିନାଶ ସଙ୍ଗେ ସଙ୍ଗେ ସୂକ୍ଷ୍ମ, ଅଶରୀରୀ ଏବଂ ଅପୂର୍ଣ୍ଣ ଇଚ୍ଛାର ମଧ୍ୟ ମୃତ୍ୟୁ ଘଟେ ? ଫ୍ରଏଡ଼ ଏହାର ଉତ୍ତର ଦେଇ ନାହାନ୍ତି । ଆମମାନଙ୍କୁ ଏହାର ଉତ୍ତର ଦେବାକୁ ହେବ । ଆମ୍ଭରେ ବିଶ୍ୱାସ କେହି କରି ପାରେ ବା ନ ପାରେ । ମାତ୍ର ମାନିବାକୁ ହେବ, ଏହି ଅଶରୀରୀ ଅପୂର୍ଣ୍ଣ ଏବଂ ଅବରୁଦ୍ଧ ଇଚ୍ଛା ଶରୀରର ବିନାଶ ପରେ ମୁକ୍ତି-ଲାଭ କରି ପୁନରାୟ ଅନୁକୂଳ ଶରୀର ଧାରଣ କରେ । ପ୍ରାଚ୍ୟ ଦର୍ଶନ ମତରେ ମଣିଷ ନିଷ୍କାମଭାବରେ କାର୍ଯ୍ୟ କଲେ ତାହାର ଆଉ ପୁନର୍ଜନ୍ମ ହୁଏ ନାହିଁ । "ମଣିଷର କୌଣସି ଇଚ୍ଛା ଅପୂର୍ଣ୍ଣ ରହିଲେ ଉକ୍ତ ଇଚ୍ଛାର ବିଲୋପ ହୁଏ ନାହିଁ, ଅର୍ଥାତ୍ ମଣିଷର ମୃତ୍ୟୁ ପର୍ଯ୍ୟନ୍ତ ଏହି ଅପୂର୍ଣ୍ଣ ଇଚ୍ଛା ମଣିଷର ଅନ୍ତଃକରଣରେ ରହିଥାଏ," ପାଶ୍ଚାତ୍ୟ ଏହି ସତ୍ୟରେ ଉପନୀତ ହୋଇଅଛି; ମାତ୍ର ମୃତ୍ୟୁ ପରେ ଏହି ଅପୂର୍ଣ୍ଣ ଇଚ୍ଛାର କି ଅବସ୍ଥା ଘଟେ, ତାହା ପାଶ୍ଚାତ୍ୟ ଜାଣି ନାହିଁ— ପ୍ରାଚ୍ୟ ଜାଣିଛି ।

## ନିଦ୍ରା

ଦ୍ୱିରୂପା ବିକୃତି ଥିଲେ ମଣିଷର ସୁନିଦ୍ରା ହୁଏ ନାହିଁ; ସେ ପ୍ରଳାପ କରେ ଏବଂ ଅନେକ ସ୍ୱପ୍ନ ଦେଖେ । ନିଦ୍ରାବେଳେ ଦ୍ୱିରୂପା ବିକୃତିଗ୍ରସ୍ତ ବ୍ୟକ୍ତିର ବ୍ୟକ୍ତିତ୍ୱ ଦ୍ୱିଧା ବିଭକ୍ତ ହୋଇଯାଏ । ପ୍ରଥମ ବ୍ୟକ୍ତିତ୍ୱ ନିଦ୍ରା ଯାଏ ବା ଢୋଳାଏ । ଦ୍ୱିତୀୟ ବ୍ୟକ୍ତିତ୍ୱ ଜାଗ୍ରତ ହୋଇ ଅନ୍ୟ ଲୋକ ସଙ୍ଗରେ କଳି କରେ, ଅନ୍ୟ ବିରୁଦ୍ଧରେ ଅଭିଯୋଗ କରେ; ଏହି ଦ୍ୱିତୀୟ ବ୍ୟକ୍ତିତ୍ୱ ଉପରେ ଚିତ୍କାର କରି ଉଠେ ଓ ବିଳାପ ସ୍ୱରରେ କ୍ରନ୍ଦନ କରେ । ନିଦରେ ହସିବା ଓ ଗାନ କରିବା

ଦ୍ୱିତୀୟ ବ୍ୟକ୍ତିତ୍ୱର କାର୍ଯ୍ୟ । ନିଦ୍ରାରେ ଜାଗ୍ରତ ଥିବା ଦ୍ୱିତୀୟ ବ୍ୟକ୍ତିତ୍ୱର ବହିର୍ଜଗତ୍ ସଙ୍ଗେ କୌଣସି ସମ୍ପର୍କ ନ ଥାଏ । ଏଣୁ ନିଦରେ କେହି ପ୍ରଲାପ କଲେ, ଗାଇଲେ, ହସିଲେ, କାନ୍ଦଲେ, ପାଖରେ ଶୋଇଥିବା ଅନ୍ୟ କେହି ବ୍ୟକ୍ତି ଯଦି ତାଙ୍କୁ ପଚାରେ ସେ ସେ ଏପରି କାହିଁକି ହେଉଛନ୍ତି, ତେବେ ସେ ତାହାର ଉତ୍ତର ଦେଇ ପାରେ ନାହିଁ । ନିଦରେ ଲୋକ କଳ୍ପିତ ବ୍ୟକ୍ତିକୁ ସ୍ପର୍ଶ କରେ, ଚୁମ୍ବନ କରେ, କଳ୍ପିତ ବ୍ୟକ୍ତିକୁ ଦେଖି ପାରେ, ତାହା ସଙ୍ଗରେ କଥା କହେ, ତାହାସଙ୍ଗେ ହସଖୁସି ହୁଏ ଓ କଳହ କରେ; ମାତ୍ର ନିକଟରେ ବସିଥିବା ବା ଶୋଇଥିବା ସଙ୍ଗୀର ଡାକ ଶୁଣି ପାରେ ନାହିଁ ; ତାହାର ସ୍ପର୍ଶ ବୋଧ କରି ପାରେ ନାହିଁ; ତାହାକୁ ଦେଖି ପାରେ ନାହିଁ । ନିଦରେ ଲୋକ ବିଛଣାରୁ ଉଠି କୂଅରୁ ପାଣି କାଢ଼ି ଗୋଡ଼ହାତ ଧୁଏ, ଶିକାକୁ ହାତ ବଢ଼ାଇ କଳ୍ପିତ ଜଳଖିଆ ଆଣି ଖାଏ । ତତ୍‌ପରେ ମୁହଁ ହାତ ଧୋଇ ପୁଣି ବିଛଣାରେ ପଡ଼ିଯାଏ । ଏହି କୂଅକୁ ସ୍ଥାନଚ୍ୟୁତ ଯଦି କରିଯାଏ ତେବେ ଉକ୍ତ ବ୍ୟକ୍ତି ନିଦରେ କୂଅର ପୂର୍ବସ୍ଥାନକୁ ଯାଇ ପାଣି କାଢ଼ିବାର ଅଭିନୟ କରିବ କିମ୍ବା ବିଭିଯାତ କୂଅକୁ ଖୋଜି ବୁଲିବ, ଅଥଚ ୨।୪ ହାତ ଦୂରରେ ସ୍ଥାନଚ୍ୟୁତ ହୋଇ ରହିଥିବା କୂଅକୁ ଦେଖି ସେହି କୂଅ ବୋଲି ଜାଣି ପାରିବ ନାହିଁ । ତାହାର ପୂର୍ବପରିଚିତ ଯେ କୌଣସି ବସ୍ତୁକୁ ସ୍ଥାନଚ୍ୟୁତ କଲେ ଏହିପରି ଦଶା ଘଟିବ । ଜଳଖିଆ ଟଙ୍ଗାଯାଇଥିବା ଶିକାକୁ ସ୍ଥାନଚ୍ୟୁତ କରି ରଖିଲେ ସେ ଶିକାର ପୂର୍ବସ୍ଥାନକୁ ଯାଇ ହାତ ବଢ଼ାଇ ଜଳଖିଆ ଆଣିବା ଓ ଖାଇବାର ଅଭିନୟ କରିବ କିମ୍ବା ବିଭିଯାତ ଶିକାଟିକୁ ଖୋଜି ବୁଲିବ । ନିଦ୍ରାରେ ଏହିପରି ଆଚରଣକୁ ସ୍ୱପ୍ନରେ ଭ୍ରମଣ ( Somnabolism ) କୁହାଯାଏ । ଲୋକ ନିଦ୍ରାଭିଭୂତ ଥାଏ, ଅଥଚ ସ୍ଥାନରୁ ସ୍ଥାନାନ୍ତରକୁ ଯାଇ ଆସି ପାରେ, ହାତ ଗୋଡ଼ ଧୁଏ,

ଲୁଗା ବଦଳାଇ ପିନ୍ଧେ, ଖାଏ ଇତ୍ୟାଦ । କୌଣସି ଗୋଟିଏ ବିଶିଷ୍ଟ କାର୍ଯ୍ୟକୁ ପ୍ରତ୍ୟହ ରାତ୍ରରେ ଶୋଇଥିବା ଅବସ୍ଥାର ଅଭ୍ୟାସ କରିବା ସ୍ୱନଦ୍ର ଭ୍ରମଣବିକୃତରେ ଦେଖାଯାଏ ।

ଏହି ବିକୃତଗ୍ରସ୍ତ କେତେକ ସ୍ତ୍ରୀଲୋକ ନିଦ୍ରାବସ୍ଥାରେ ବିଛଣାରୁ ଉଠିଯାଇ ବିଷ୍ଠାପୂର୍ଣ୍ଣ କୌଣସି ଜନଶୂନ୍ୟ ପ୍ରାନ୍ତରରେ ପ୍ରବେଶ କରନ୍ତି । ସମ୍ପୂର୍ଣ୍ଣ ଉଲଙ୍ଗ ହୋଇ ନିଜର ପରିହିତ ବସ୍ତ୍ରକୁ ଗୋଟିଏ ସ୍ଥାନରେ ରଖି ପେଠଃଇ ବା ହାମୁଡ଼େଇ ନିର୍ବିକାର ଶିଶୁପରି ବିଷ୍ଠା ଖାଇଯାନ୍ତି । ଏହିପରି ସ୍ତ୍ରୀଲୋକଙ୍କୁ କଣ୍ଢାଡ଼ାଆଣୀ କୁହାଯାଏ । ପ୍ରାନ୍ତରରେ ରାତିଅଧରେ ଉଲଙ୍ଗ ହୋଇ ବିଷ୍ଠାଭକ୍ଷଣ କରୁଥିବାର କୌଣସି ସ୍ତ୍ରୀଲୋକକୁ ଦେଖିଲେ ଡର ମାଡ଼ିବାର କଥା । ଲୋକର ଅତିମାତ୍ର ଭୟ ହେତୁ ହୃତ୍ପିଣ୍ଡର କ୍ରିୟା ରାହିତ୍ୟରେ (Heart fail) ମୃତ୍ୟୁ ଘଟିବାର ଦୃଷ୍ଟାନ୍ତ ବିରଳ ନୁହେଁ । ଏଣୁ ସ୍ୱନଦ୍ର ଭ୍ରମଣ ବିକାରଗ୍ରସ୍ତ ଉଲଙ୍ଗା ସ୍ତ୍ରୀଲୋକକୁ ପଡ଼ିଆରେ ବିଷ୍ଠା ଭକ୍ଷଣ କରିବାର ଦେଖି ଭୀତତ୍ରସ୍ତ ହୋଇ ଲୋକ ପ୍ରାଣ ହରାଇବା ବିଚିତ୍ର ନୁହେଁ । କଣ୍ଢାଡ଼ାଆଣୀ ହାବୁଡ଼ରେ ପଡ଼ିଲେ କୌଣସି ଲୋକ ଜୀବନ ପାଏ ନାହିଁ ବୋଲି ଯେଉଁ ଜନଶ୍ରୁତି ଅଛି ତାହା କପୋଳକଳ୍ପିତ ନୁହେଁ । ମାତ୍ର କଣ୍ଢାଡ଼ାଆଣୀ ପ୍ରକୃତରେ ନିର୍ଦ୍ଦୋଷ ।

ଶୈଶବରେ ଶିଶୁ ବିକାରହୀନ ଥାଏ ; ସୁଗନ୍ଧ, ଦୁର୍ଗନ୍ଧ, ଖାଦ୍ୟ ଓ ମଳମୂତ୍ରରେ କୌଣସି ପ୍ରଭେଦ ବାରି ପାରେ ନାହିଁ । ସ୍ୱକୀୟ ପାୟୁ ଏବଂ ଉପସ୍ଥରେ ରମଣାତ୍ମକ ଆକର୍ଷଣ (Sexual Sensitiveness) ଅନୁଭବ କରେ । ଏହି ହେତୁ ଶିଶୁ ନିର୍ବିକାରଭାବରେ ସ୍ୱକୀୟ ମଳ ମୂତ୍ର ଭକ୍ଷଣ କରେ ଏବଂ ଏହି ଅଂଶରେ ସେ ନିଜର ଜନକ-ଜନନୀଠାରୁ ତାଡ଼ନା ଓ ଶାସନ ପାଏ । ଜନକଜନନୀର ତାଡ଼ନା

ଓ ଶାସନଫଳରେ ଶିଶୁର ମଳ ମୂତ୍ର ଘାଣ୍ଟିବାର ଓ ଭକ୍ଷଣ କରିବାର ଇଚ୍ଛା ଲୋପ ହୋଇଯାଏ ନାହିଁ । ଏହି ଇଚ୍ଛାର ଅବରୋଧ ମାତ୍ର ଘଟେ । ଏହି ଅବରୁଦ୍ଧ ଅପୂର୍ଣ୍ଣ ଇଚ୍ଛା ଯୌବନାବସ୍ଥାରେ ବହିଃ-ପ୍ରକାଶିତ ହେବାକୁ ଚେଷ୍ଟା କରେ ଏବଂ ଏହି ଚେଷ୍ଟାଫଳରେ ମଣିଷର ନାନାବିଧ ମାନସିକ ବିକୃତି ଦେଖାଯାଏ । ଫ୍ରଏଡ୍‌ଙ୍କ ମତରେ ପରପୀଡ଼ା ଏବଂ ଆତ୍ମପୀଡ଼ା ବିକୃତି, ଦ୍ୱିରୂପା ଏବଂ ବହୁରୂପା ବିକୃତିର ମୂଳରେ ଶୈଶବର କୌଣସି ନା କୌଣସି ଅବରୁଦ୍ଧ ଇଚ୍ଛା ବିଦ୍ୟମାନ । ସ୍ୱପ୍ନରେ, ସ୍ନାୟୁ ଭ୍ରମଣରେ, ପ୍ରଳାପରେ ମଣିଷ ତାହାର ଅବରୁଦ୍ଧ ଇଚ୍ଛାର ତୃପ୍ତିପାଇଁ ପୂର୍ବ ପୂର୍ବ ଆଚରଣମାନଙ୍କର ପୁନରଭିନୟ (Rehersal) କରେ । କୌଣସି ସ୍ତ୍ରୀଲୋକ ନିଦରେ ବିଛଣାରୁ ଉଠିଯାଇ ପଡ଼ିଆରେ ଉଲଗ ହୋଇ ବିଷ୍ଠା ଭକ୍ଷଣ କରେ, ଏହାଦ୍ୱାରା ଉକ୍ତ ସ୍ତ୍ରୀଲୋକଟି ତାହାର ଶିଶୁସ୍ତରକୁ ଖସିଯାଏ । ରୂଢ଼ି ଅର୍ଥରେ ପ୍ରୟୋଗ କଲେ ସ୍ତ୍ରୀଲୋକଟି ଶିଶୁ ପାଲଟିଯାଏ । ସ୍ତ୍ରୀଲୋକର ସ୍ତ୍ରୀତ୍ୱ ନିଦ୍ରିତ ଥାଏ ; ତାହାର ଶିଶୁତ୍ୱ ଜାଗି ଉଠେ । ଏହାକୁ ଫ୍ରଏଡ୍‌ଙ୍କ ଭାଷାରେ ନିମ୍ନଗତି (Regression) କୁହାଯାଏ । କୌଣସି ବ୍ୟକ୍ତିର ନିମ୍ନଗତି ଘଟିଲେ ସେ ପୂର୍ଣ୍ଣଭାବରେ ବା ଆଂଶିକ ଭାବରେ ନିମ୍ନସ୍ତରକୁ ଖସିଯାଏ ; ନିମ୍ନସ୍ତରର ବା ଅତୀତ ବୟସର ଆଚରଣର ପୁନରାବୃତ୍ତି କରେ ।

**ଭୂତବାଦ :—** କୌଣସି ଲୋକର ଭୂତଦାଉ ହେଲେ, କୌଣସି ସ୍ତ୍ରୀଲୋକର ମୂର୍ଚ୍ଛାରୋଗ ହେଲେ (Hysteria), ତାହାକୁ ଡାଆଣୀ ମାଡ଼ିବସିଲେ ବ୍ୟକ୍ତିବିଶେଷର ପ୍ରଥମ ବ୍ୟକ୍ତିତ୍ୱର ତିରୋଧାନ ଘଟେ ଏବଂ ଗୋଟିଏ ଅପ୍ରଧାନ ଦ୍ୱିତୀୟ ବ୍ୟକ୍ତିତ୍ୱ ଜାଗ୍ରତ ହୁଏ । ଏହିପରି ଅବସ୍ଥାରେ ଉକ୍ତ ବ୍ୟକ୍ତି କୌଣସି ପରିଚିତ ବା ଅପରିଚିତ

ମୃତବ୍ୟକ୍ତିର ଆଚରଣମାନ ପ୍ରକାଶ କରେ । ଦୃଷ୍ଟାନ୍ତସ୍ୱରୂପ ମନେ କର —ରମା ଗୋଟିଏ ସ୍ତ୍ରୀଲୋକ ; ତାହାର ଖୁଡ଼ୁତା ଗୋପାଳ ଗତବର୍ଷ ତଳେ ମରିଯାଇଛନ୍ତି । ଦିନେ ସାମାନ୍ୟ ଜ୍ୱରରେ ରମାର ମୂର୍ଚ୍ଛା ଆସିଲା । ମୂର୍ଚ୍ଛାର ଅବସାନ ପରେ ଯେତେବେଳେ ପ୍ରଳାପର ଆରମ୍ଭ ହେଲା, ସେତେବେଳେ ରମାର କଥା ବାର୍ତ୍ତାରେ କେତେ-ଗୁଡ଼ିଏ ଅପରିଚିତ ଓ ଅଦ୍ଭୁତ ଆଚରଣ ପ୍ରକାଶ ପାଇଲା । ସେବା କରୁଥିବା ଲୋକେ ମନେ କଲେ ଯେ ରମାକୁ କୌଣସି ଭୂତ ମାଡ଼ିବସିଅଛି । ତାହାର ଆଚରଣକୁ ବିଶେଷ ଲକ୍ଷ୍ୟ କରି ଦେଖାଗଲା ଯେ ରମା ଅବିକଳ ତାହାର ମୃତ ଖୁଡ଼ୁତା ଗୋପାଳ ପରି ଆଚରଣ ପ୍ରକାଶ କରୁଅଛି । ରମାର ରମାତ୍ୱ ( First personality ) ଲୋପ ହୋଇଅଛି ; ତାହାଠାରେ ମୃତ ଖୁଡ଼ୁତାର ଆବିର୍ଭାବ ହୋଇଅଛି । ଏହି ମୃତ ଖୁଡ଼ୁତାର ଆବିର୍ଭାବ ରମାର ଦ୍ୱିତୀୟ ବ୍ୟକ୍ତିତ୍ୱ । ପ୍ରଥମ ବ୍ୟକ୍ତିତ୍ୱହିଁ ରମାର ବିବେକ ଏବଂ ଦ୍ୱିତୀୟ ବ୍ୟକ୍ତିତ୍ୱହିଁ କାମମୂଳକ ବିଦ୍ରୋହୀ ଇଚ୍ଛା । ଏହି ବିଦ୍ରୋହୀ ଇଚ୍ଛା ବିବେକକୁ ପରାଜିତ କରି ତାହାକୁ ବନ୍ଦୀ କରିଅଛି ଏବଂ ରମାର ଶରୀର ଓ ମନରେ ପୂର୍ଣ୍ଣ ସ୍ୱତ୍ୱ କରୁଅଛି । ଏହି ଅବସ୍ଥାରେ ସଙ୍ଗିମାନେ ଯଦି ରମାକୁ ପଚାରନ୍ତି, "ତୁ କିଏ ?" ରମା ଉତ୍ତର ଦିଏ, "ମୁଁ ଗୋପାଳ" । "ତୁ କାହିଁକି ଆସିଛୁ ?" ସଙ୍ଗିମାନେ ପଚାରିଲେ ରମା ଉତ୍ତର ଦିଏ, "ମୁଁ ରମାକୁ ଖାଇବି ।" ପ୍ରଥମ ବ୍ୟକ୍ତିତ୍ୱହିଁ ରମାରୂପୀ ପରାଜିତ ଓ ନିସ୍ତେଜ ବିବେକ ; ଦ୍ୱିତୀୟ ବ୍ୟକ୍ତିତ୍ୱହିଁ ମୃତ ଗୋପାଳରୂପୀ ବିଦ୍ରୋହୀ ଇଚ୍ଛା । "ମୁଁ ରମାକୁ ଖାଇବି" ଏହି ଉକ୍ତିରେ ବିଦ୍ରୋହୀ ଇଚ୍ଛା ରମାରୂପୀ ବିବେକକୁ ବା ପ୍ରଥମ ବ୍ୟକ୍ତିତ୍ୱକୁ ଧ୍ୱଂସ କରିବାକୁ କହୁଛି । କୌଣସି କାରଣରୁ ରୋଗୀର ବିବେକ ବା ପ୍ରଥମ ବ୍ୟକ୍ତିତ୍ୱ ସମ୍ପୂର୍ଣ୍ଣ ଲୋପ ହୋଇଯାଏ ଏବଂ ବିଦ୍ରୋହୀ

ଇଚ୍ଛାହିଁ ଦ୍ୱିତୀୟ ବ୍ୟକ୍ତିତ୍ୱଭାବରେ ତାହାର ଶରୀର ଓ ମନରେ ସମ୍ପୂର୍ଣ୍ଣ ରାଜତ୍ୱ କରେ । ଏଣୁ ବଦ୍ଧପାଗଳର ( Stark mad ) କୌଣସି ଆଚରଣ ହେତୁଯୁକ୍ତ (Rational) ହୋଇ ପାରେ ନାହିଁ । ମୃଗୀରୋଗ ( Hysteria ) ଯୌବନୋନ୍ମାଦଜନିତ ଗୋଟିଏ ମାନସିକ ବିକୃତ । ଏହା ଦ୍ୱିରୂପା ବିକୃତିର ଅନ୍ତର୍ଗତ । ଏହି ବିକୃତିରେ ରମଣାକାଙ୍କ୍ଷାର ପ୍ରବଳ ଅବରୋଧ ଏବ ଅତୃପ୍ତି ଘଟେ । ଏହି ଅତୃପ୍ତ ପ୍ରବଳ ରମଣାକାଙ୍କ୍ଷା ବିବେକକୁ ସମ୍ପୂର୍ଣ୍ଣ ଲୋପ କରି ଦ୍ୱିତୀୟ ବ୍ୟକ୍ତିତ୍ୱର ସ୍ଥାନ ଅଧିକାର କରେ । ଏହି ଉନ୍ମାଦ ଯୁବତୀ ସ୍ତ୍ରୀ ଏବଂ ଅଶ୍ରୁଯୌବନା ବାଳିକାଠାରେ ଦେଖାଯାଏ । ଏହି ବିକୃତିରୁ ସ୍ତ୍ରୀଲୋକଟି ଉଲଗ୍ନ ହୋଇ ଗୁପ୍ତ ଅଙ୍ଗମାନ ଦର୍ଶକମାନଙ୍କୁ ଦେଖାଏ ; ବ୍ୟକ୍ତିବିଶେଷକୁ ଚୁମ୍ବନ କରିବାକୁ ଧାବିତ ହୁଏ ; ସୁରତସମ୍ଭାଷଣ ( Amorous talks ) କରେ ; ରତିସୁଲଭ ହାବଭାବ ପ୍ରକାଶ କରେ । ସ୍ୱାମୀ ନପୁଂସକ ବା କଦାକାର ହେଲେ, ସ୍ୱାମୀଠାରୁ ରତିସୁଖରେ ପୂର୍ଣ୍ଣତୃପ୍ତି ନ ଘଟିଲେ ଅସଂଯତ ପ୍ରକୃତିର ସ୍ତ୍ରୀଠାରେ ଏହି ବିକୃତ ଦେଖାଦେଇ ପାରେ । କେତେକ ସ୍ତ୍ରୀ ପ୍ରଥମ ହୋଇ ସ୍ୱାମୀଗୃହକୁ ଗମନ କଲା ପରେ ପରେ ସେମାନଙ୍କଠାରେ ଏହି ପ୍ରକାର ଏକ ବିକୃତ ଦେଖା ଦିଏ । ଏହି ପ୍ରକାର ବିକୃତିର କାରଣ ହେଉଛି ସ୍ୱାମୀଗୃହରେ ସ୍ୱାମୀଠାରୁ ହତାଦରଲାଭ ବା ସହବାସସୁଖରେ ଅତୃପ୍ତି କିମ୍ବା ପିତୃଗୃହରେ କୌଣସି ପ୍ରଣୟୀସହ ଗୁପ୍ତପ୍ରଣୟ ଏବଂ ସ୍ୱାମୀଗୃହକୁ ଆସିବା ପରେ ଏହି ଗୁପ୍ତପ୍ରଣୟ ସୁଖରୁ ବଞ୍ଚିତ ହେବା । ଅନ୍ୟ ଗୋଟିଏ କାରଣ ହେଉଛି, ଏହାହିଁ ଯେ, ଗୁପ୍ତପ୍ରଣୟୀ ତାହାର ପ୍ରେମିକା ସ୍ୱାମୀଗୃହକୁ ଯିବାଫଳରେ ପ୍ରେମଲାଭରୁ ବଞ୍ଚିତ ହୋଇ ପ୍ରେମିକାର ସଙ୍ଗଲାଭ ପାଇଁ ତାହା ଉପରେ ବଶୀକରଣ, ଉଚାଟନ ଓ ସ୍ତମ୍ଭନ ଇତ୍ୟାଦ କିୟା ପ୍ରୟୋଗ କରେ ।

ସାଧାରଣ ଭାଷାରେ ଏହାକୁ ବାଉ ପେଟିବା କୁହାଯାଏ । ଅର୍ଥାତ୍ ନବବଧୂର ଯୌବନୋନ୍ମାଦଜନିତ ମାରବିକାର ( Hysteria ) ଘଟିଲେ ଉକ୍ତ ବଧୂଟିକୁ କେହି ବାଉ ପେଟିଛି ବା ଭୂତଗ୍ରସ୍ତ କରିଛି ବୋଲି କୁହାଯାଏ । ଏହି ବିକୃତିଫଳରେ ବଧୂଟି ଉଚ୍ଛୃଙ୍ଖଳ ହୋଇ ବାରମ୍ବାର ପିତୃଗୃହକୁ ପଳାଇ ଯାଏ, ସ୍ୱାମୀଗୃହରେ ଥିବାବେଳେ ପରିହିତ ବସ୍ତ୍ରାଦିକୁ ଦୂରକୁ ନିକ୍ଷେପ କରେ ବା ପୋଡ଼ିଦିଏ, ଅନ୍ୟକୁ କାମୁଡ଼ି ଗୋଡ଼ାଏ ; ଅନ୍ୟକୁ ଆଖି ଦେଖାଇ ଦାନ୍ତ ରଗଡ଼େ, ମାତ୍ର ପିତୃଗୃହକୁ ଗଲାକ୍ଷଣି ତାହାର ଏହି ବିକୃତି ଦୂର ହୋଇଯାଏ ।

**ସମ୍ମୋହନକ୍ରିୟା (Hypnotism)**—ପୂର୍ବରୁ କୁହାଯାଇଛି ଯେ କୌଣସି ନବବଧୂକୁ ମାରବିକାର ( Hysteria ) ହେବାର ଗୋଟିଏ କାରଣ ଏହାହିଁ ଯେ ଗୁପ୍ତପ୍ରଣୟୀ ତାହାର ପ୍ରେମିକା ସ୍ୱାମୀଗୃହକୁ ଯିବାଫଳରେ ପ୍ରେମଲାଭରୁ ବଞ୍ଚିତ ହୋଇ ପ୍ରେମିକାର ସଙ୍ଗଲାଭ ପାଇଁ ତାହା ଉପରେ ପେଷଣ, ଉଚ୍ଚାଟନ, ସ୍ତମ୍ଭନ ଇତ୍ୟାଦି କ୍ରିୟା ପ୍ରୟୋଗ କରେ । ଏହି ପେଷଣ, ଉଚ୍ଚାଟନ, ସ୍ତମ୍ଭନ ଇତ୍ୟାଦି କ୍ରିୟାମାନ ସମ୍ମୋହନ ବିଧାନର ଅନ୍ତର୍ଗତ । ସମ୍ମୋହନ କ୍ରିୟା ( Hypnotic Art ) ଜାଣିଥିବା କୌଣସି ବ୍ୟକ୍ତି ଅନ୍ୟ କୌଣସି ବ୍ୟକ୍ତିର ମାନସିକ ଶକ୍ତି କମ୍ ଥିଲେ ତାହାର ଆପାଦମସ୍ତକ ସର୍ବାଙ୍ଗରେ ହସ୍ତାଙ୍ଗୁଳି ଚାଳନା କରି, ତାହାର ଦେହକୁ ଫୁଙ୍କି, ଅଙ୍ଗୁଳିରେ ଚୁଟିକି ମାରି ଉକ୍ତ ବ୍ୟକ୍ତିର ଚୈତନ୍ୟର କିଞ୍ଚିତ ଲୋପ କରିଦିଏ ଏବଂ ଏହି ଚେତନା ଅଂଶିକଭାବରେ ଲୁପ୍ତ ହୋଇଥିବାବେଳେ ତାହାକୁ କେତେଗୁଡ଼ିଏ ନିର୍ଦ୍ଦେଶ ବା ସୂଚନା (Suggestion) ଦିଏ । ଏହି ସୂଚନାକୁ ସମ୍ମୋହିତ ବ୍ୟକ୍ତି ଗ୍ରହଣ କରିବା ଫଳରେ ତାହାଠାରେ ଦ୍ୱିତୀୟ ବ୍ୟକ୍ତିତ୍ୱ ଜାଗ୍ରତ ହୁଏ ଏବଂ ପ୍ରଥମ ବ୍ୟକ୍ତିତ୍ୱର ତିରୋଧାନ ଘଟେ । ଏହାର ଫଳରେ ତାହାର ଆଚରଣରେ

କେତେକ ଅସ୍ୱାଭାବିକତା ଓ ନୂତନତ୍ୱ ଦେଖାଯାଏ । କେତେକ ପ୍ରକାର ଜ୍ୱର ଓ ପ୍ରଳାପକୁ ଅନେକବେ ଝଡ଼ାଫୁଙ୍କାଦ୍ୱାରା ନିରାମୟ କର ଦଆଯାଏ । ଏହ ଝଡ଼ାଫୁଙ୍କା ଏକପ୍ରକାର ସମ୍ମୋହନକି୍ୟା । ଅପରାଜତା ଗୋଟିଏ ସଂସ୍କୃତ ମନ୍ତ୍ରସମ୍ବଳିତ ପୁସ୍ତକର ନାମ । ଏହା ସମ୍ମୋହନକି୍ୟାର ଗୋଟିଏ ପ୍ରସିଦ୍ଧ ପୁସ୍ତକ ।

ଭୂତ, ପ୍ରେତାତ୍ମା ବା ଅଶରୀରୀର ( Unbodied Spirit ) ଅସ୍ତିତ୍ୱ ସମ୍ବନ୍ଧରେ ପାଶ୍ଚାତ୍ୟ ଏପର୍ଯ୍ୟନ୍ତ ସ୍ଥିରସିଦ୍ଧାନ୍ତରେ ଉପସ୍ଥିତ ହୋଇ ପାର ନାହାଁ । କେହ କେହ ମନସ୍ତତ୍ତ୍ୱଜ୍ଞ କହନ୍ତ ଯେ ଭୂତ, ପ୍ରେତାତ୍ମା ପ୍ରଭୃତ ଅଶରୀରୀ ଅଛନ୍ତ । ଏହ ଜଗତ୍ ଦୃଶ୍ୟମାନ ଶରୀରୀ ଜୀବର କେବଳ ବସତସ୍ଥଳ ନୁହେଁ ; ଏହା କୋଟି କୋଟି ଶ୍ରେଣୀର ଅଶରୀରୀ ଜୀବଙ୍କର ମଧ୍ୟ ଆବାସଭୂମି । ଅନ୍ୟ କେହ କେହ ମନୀଷୀ ମତ ବ୍ୟକ୍ତ କରନ୍ତ ଯେ ଭୂତ ବା ପ୍ରେତାତ୍ମାର କୌଣସି ଅସ୍ତିତ୍ୱ ନାହିଁ । କୌଣସି ବ୍ୟକ୍ତଠାରେ ଯେ ଅପର କୌଣସି ଅପରଚିତ ବ୍ୟକ୍ତର ଆଚରଣ ପ୍ରକାଶିତ ହୁଏ, ତାହା କେବଳ ସମ୍ମୋହନକି୍ୟା ଫଳରେ ଘଟେ । ମାନ ପ୍ରେତାତ୍ମାଙ୍କୁ ଆହ୍ୱାନ କରବାବେଳେ ରୁଦ୍ଧ ପ୍ରକୋଷ୍ଠରେ ( Seance ) ଶଙ୍ଖମଧ୍ୟରୁ ବା ଶୂନ୍ୟରୁ କୌଣସି ମୃତବ୍ୟକ୍ତର କଣ୍ଠସ୍ୱର ଶୁଭେ । ଏହ ଘଟଣାର କୌଣସି ବୈଜ୍ଞାନିକ ବ୍ୟାଖ୍ୟା ଏପର୍ଯ୍ୟନ୍ତ ଏହ ଅବିଶ୍ୱାସୀମାନେ ଦେଇ ପାର ନାହାନ୍ତ ; କେବଳ ଏତକ ମାନ ନେଇଛନ୍ତ ଯେ ଏହପର ଆଶ୍ଚର୍ଯ୍ୟ ଏବଂ ଅଜ୍ଞେୟ ଘଟଣାମାନ ଘଟେ । ଆମେରକାରେ ପ୍ରେତାହ୍ୱାନ ବେଳେ ରୁଦ୍ଧ ପ୍ରକୋଷ୍ଠରେ ମାଧ୍ୟମ ଶକ୍ତସମ୍ପନ୍ନ ସ୍ତ୍ରୀର ଚୈତନ୍ୟ ଲୋପ ହୁଅନ୍ତେ ଶଙ୍ଖ ମଧ୍ୟରୁ ଉକ୍ତ ସ୍ତ୍ରୀର ଭାଇର କଣ୍ଠସ୍ୱର ଶୁଭିଲା । ଏହ କଣ୍ଠସ୍ୱର କହଲା ଯେ ଆଜକୁ ତନ ଦନ ହେଲା ସେ ନର-କଳେବର ଛାଡ଼ ପ୍ରେତଜଗତକୁ ଆସିଅଛି । ପରେ ସମ୍ବାଦ

କେବାରୁ ଜଣାଯାଇଥିଲା ଯେ ଉକ୍ତ ସ୍ତ୍ରୀଲୋକଟିର ଭ୍ରାତା ପ୍ରକୃତରେ ବନ ଦନ ହେଲା ଇଂଲଣ୍ଡରେ ମର ଯାଇଅଛି । ଯେଉଁମାନଙ୍କୁ ଭାଳଣି ଲଗେ, ଯେଉଁ ସ୍ତ୍ରୀଲୋକମାନଙ୍କୁ ସହଜରେ ଭୂତବାଇ କରେ, ସେହି ମାନଙ୍କର ଏକପ୍ରକାର ମାନସିକ ପ୍ରକୃତ ଥାଏ । ଏହି ପ୍ରକୃତ ହେତୁ ସେମାନଙ୍କର ସହଜରେ ଚୈତନ୍ୟ ଲୋପ ହୋଇଯାଏ ଏବଂ ପ୍ରଧାନ ବ୍ୟକ୍ତିତ୍ୱର ଅନ୍ତର୍ଦ୍ଧାନ ହୁଏ । ଦ୍ୱିତୀୟ ବ୍ୟକ୍ତିତ୍ୱର ଆବର୍ଭାବ ପରେ ଉକ୍ତ ବ୍ୟକ୍ତିର ଆଚରଣରେ କେତେକ ନୂତନତ୍ୱ ଦେଖାଯାଏ, ସେତେବେଳେ କୁହାଯାଏ ଯେ ଉକ୍ତ ଲୋକଠାରେ କୌଣସି ଭୂତ, ଅପଦେବତା, କାଳୀ, ମଶାଣି ଚଣ୍ଡୀ ବା କୌଣସି ଗ୍ରାମଦେବତାର ଆବର୍ଭାବ ହୋଇଅଛି । ଯେଉଁ ବ୍ୟକ୍ତିମାନଙ୍କର ଏହି ଅବସ୍ଥା ଘଟେ ସେମାନଙ୍କୁ ମାଧ୍ୟମ (Medium) କୁହାଯାଏ ; ଅର୍ଥାତ୍ ଉକ୍ତ ବ୍ୟକ୍ତିମାନଙ୍କଠାରେ ଅଶରୀରୀ ସୂକ୍ଷ୍ମବସ୍ତୁ (Sprit) ର ଆବର୍ଭାବ ହୁଏ ।

**ଯନ୍ତ୍ରଚାଳିତ ଆଚରଣ**(Mannerism):—ଦ୍ୱିରୂପା ବିକୃତି ହେତୁ ମଣିଷ ଏପରି କେତେ ଗୁଡ଼ିଏ ଆଚରଣ କରେ ଯେଉଁ ଆଚରଣଗୁଡ଼ିକୁ ସେ ଯନ୍ତ୍ରଚାଳିତବତ୍ (Automatically) କରି ଯାଏ ଏବଂ ଏହି ଆଚରଣମାନଙ୍କୁ ସେ ଜ୍ଞାତସାରରେ କରେ ନାହିଁ । ବ୍ୟକ୍ତିବିଶେଷ ବକ୍ତୃତା ଦେବାବେଳେ ହାତ, ଗୋଡ଼ ଓ ମୁଣ୍ଡ ହଲାଏ । ଛାତ୍ର ଶ୍ରେଣୀରେ ପଢ଼ିବା ବେଳେ ତାହାର ପଦ ନୃତ୍ୟ କରୁଥାଏ । ବକ୍ତା ବା ଛାତ୍ରର ହସ୍ତପଦ ସଞ୍ଚାଳନକ୍ରିୟା ତାହାର କୌଣସି ଅବରୁଦ୍ଧ ଇଚ୍ଛାଦ୍ୱାରା ସାଧିତ ହୁଏ । ଏହି ଅବରୁଦ୍ଧ ଇଚ୍ଛାହିଁ ଦ୍ୱିତୀୟ ବ୍ୟକ୍ତିତ୍ୱ । ବକ୍ତାର ବକ୍ତୃତା ଓ ଛାତ୍ରର ପାଠପଢ଼ା ବିବେକ ବା ପ୍ରଥମ ବ୍ୟକ୍ତିତ୍ୱଦ୍ୱାରା ସାଧିତ ହୁଏ । ବକ୍ତା ବକ୍ତୃତା ଦେବା ବେଳେ ବା ଛାତ୍ର ପାଠ ପଢ଼ିବାବେଳେ ହସ୍ତପଦ ସଞ୍ଚାଳନକ୍ରିୟା ପ୍ରତି ଦୃଷ୍ଟି ଓ ମନୋଯୋଗ ଦେଲକ୍ଷଣି ଉକ୍ତ କ୍ରିୟା ବନ୍ଦ ହୋଇଯାଏ ।

ଏହାର ଅର୍ଥ ଏହାହିଁ ଯେ ବିବେକ ବକ୍ତାର ବକ୍ତୃତା ବା ଲେଖକର ପଢ଼ା କାର୍ଯ୍ୟରେ ବ୍ୟସ୍ତ ଥିଲାବେଳେ ଅବରୁଦ୍ଧ କୌଣସି ଅତୃପ୍ତ ଇଚ୍ଛା ହସ୍ତପଦ ସଞ୍ଚାଳନାଦି କ୍ରିୟାରେ ବ୍ୟାପୃତ ହୁଏ। ଅତୃପ୍ତ ଅବରୁଦ୍ଧ ଇଚ୍ଛାଟି ବିବେକର ଅଜ୍ଞାତରେ ଏହି କାର୍ଯ୍ୟ କରିଯିବାକୁ ଚାହେଁ। ଜାଗ୍ରତ ବିବେକ ବା ପ୍ରଥମ ବ୍ୟକ୍ତିତ୍ୱର ଅଜ୍ଞାତରେ ଅବରୁଦ୍ଧ ଇଚ୍ଛା ବା ଦ୍ୱିତୀୟ ବ୍ୟକ୍ତିତ୍ୱ ଯେଉଁ କ୍ରିୟା ପ୍ରକାଶ କରେ ତାହାକୁ ସ୍ୱତଃ ପ୍ରକାଶିତ କ୍ରିୟା (Automatism) ବା ଜଡ଼ ଚେତନା ମଧ୍ୟ ବୋଲି ଯାଇ ପାରେ। ଜଡ଼ବସ୍ତୁ ଶଙ୍ଖ ମଧ୍ୟରୁ ଯେତେବେଳେ ମନୁଷ୍ୟସ୍ୱର ନିର୍ଗତ ହୁଏ, ଦୁଇ ଖଣ୍ଡ ବାଉଁଶବତା ବ୍ୟକ୍ତିବିଶେଷର ଧୃଚନା ପ୍ରଭାବରେ ଯେତେବେଳେ ଗତିଶକ୍ତିଯୁକ୍ତ ହୁଏ ସେତେବେଳେ ଜଡ଼ବସ୍ତୁର ଏବଂବିଧ କ୍ରିୟାକୁ ଜଡ଼ଚେତନା କୁହାଯାଏ।

ସ୍ୱଗତୋକ୍ତି (Sol oque):—ଦ୍ୱିରୂପୀ ବିକୃତଗ୍ରସ୍ତ ବ୍ୟକ୍ତି ନିଜ ସଙ୍ଗରେ ନିଜେ କଥା କହେ, ନିତ୍ୟ ନୈମିତ୍ତିକ କୌଣସି କାର୍ଯ୍ୟ କରି ଯାଉଥିବା ବେଳେ ଏକାକୀ ବସିଥିବାବେଳେ ନିଜକୁ ନିଜେ କହି ଯାଉଥାଏ। ଅବରୁଦ୍ଧ ଅତୃପ୍ତ କୌଣସି କାମନାହିଁ। ଦ୍ୱିତୀୟ ବ୍ୟକ୍ତିତ୍ୱରୂପେ ପ୍ରକାଶିତ ହୋଇ ପ୍ରଥମ ବ୍ୟକ୍ତିତ୍ୱ ସଙ୍ଗେ କଥା ବାର୍ତ୍ତା କରେ, କିମ୍ବା ପ୍ରଥମ ବ୍ୟକ୍ତିତ୍ୱର ପୂର୍ଣ୍ଣ ତିରୋଧାନ ଘଟେ ଏବଂ ଯୋଡ଼ିଏ ଅବରୁଦ୍ଧ ଇଚ୍ଛା ବିବେକର ଧ୍ୱଂସ କରି ବକ୍ତା ଓ ଶ୍ରୋତା ଭାବରେ କାର୍ଯ୍ୟ କରନ୍ତି। ଗୋଟିଏ ମାତ୍ର ବିଷୟରେ ବାରମ୍ବାର ନିଜ ସଙ୍ଗେ ବା ଅନ୍ୟ ବ୍ୟକ୍ତି ସଙ୍ଗେ କଥା କହିବା ଉକ୍ତ ବିକୃତର ଅନ୍ୟ ଏକ ଲକ୍ଷଣ ନିଜର ପେଷାନଯାୟୀ କଳ୍ପିତ ଯନ୍ତ୍ର ସମକ୍ଷରେ ହସ୍ତ ଚଳାଇବ ଦ୍ୱିତୀୟ ବ୍ୟକ୍ତିତ୍ୱର କାର୍ଯ୍ୟ। ହାତରେ ଝାଡ଼ୁ ନାହିଁ, ଅଥଚ କଳ୍ପିତ ଝାଡ଼ୁଟାଏ ଧରି ଦକ୍ଷିଣ ଘରଯାକ ଓଳାଇଯାଏ। ହାରମୋନିୟମ ପାଖରେ ନାହିଁ ଅଥଚ ଦ୍ୱିରୂପୀ ବିକୃତଗ୍ରସ୍ତ ବ୍ୟକ୍ତି

କଳ୍ପିତ ହାରମୋନିୟମରେ ନିଜର ଅଙ୍ଗୁଳି ଚଳାଇଯାଏ । ଅତିମାନ ଦୁଃଖ, ମାନସିକ ପୀଡ଼ା ଇତ୍ୟାଦିରୁ ବିବେକ ବା ପ୍ରଧାନ ବ୍ୟକ୍ତିତ୍ୱର ସମ୍ପୂର୍ଣ୍ଣ ଲୋପ ହୋଇଯାଏ ଏବଂ ଦ୍ୱିତୀୟ ବ୍ୟକ୍ତିତ୍ୱର ଆତ୍ମପ୍ରକାଶ ଘଟେ । ଏହି ଦ୍ୱିତୀୟ ବ୍ୟକ୍ତିତ୍ୱହିଁ ପୂର୍ବକାର୍ଯ୍ୟ ଅନୁଯାୟୀ ଆଚରଣ ପ୍ରକାଶ କରେ ।

ରାତିରେ ଏକାକୀ ଯାଉଥିବାବେଳେ ଏହି ବିକୃତିଗ୍ରସ୍ତ ବ୍ୟକ୍ତି ଭାବେ ଯେ ତାହାର ପଛେ ପଛେ କେହି ଜଣେ ଆସୁଛନ୍ତି ; ତାହାର ଦୁଇପାର୍ଶ୍ୱରେ ଦୁଇଟା ବିକଟାଳ ରୂପଧାରୀ ବ୍ୟକ୍ତି ଆସୁଛନ୍ତି ବୋଲି ସେ ଆତଙ୍କିତ ହୁଏ । ପଛେ ପଛେ ଆସୁଥିବା ବ୍ୟକ୍ତି ତାହାର ତାଡ଼ନାକାରୀ ବିବେକ ବା କଳ୍ପିତ ପିତା ବା ପ୍ରଥମ ବ୍ୟକ୍ତିତ୍ୱ । ଫ୍ରଏଡ଼ଙ୍କ ମତରେ ଅତିଶଯ୍ୟ-ହସ୍ତମୈଥୁନ-କାରୀ ବ୍ୟକ୍ତିର କଳ୍ପିତ ପିତୃ-ଆତଙ୍କ ବା ଭୂତଭୟ ଖୁବ୍ ବେଶୀ ହୁଏ ।

---

# ଚତୁର୍ଥ ପରିଚ୍ଛେଦ

## ଉନ୍ମତ୍ତ ଏବଂ ବିଶୀର୍ଣ୍ଣ
## ( Maniacs & Depressed )

ଆନନ୍ଦବୋଧ ଏବଂ ବିଷାଦବୋଧ ମନର ଯୋଡ଼ିଏ ଅନୁଭୂତି। ଏ ଅନୁଭୂତି ଯେପରିକି ସମୁଦ୍ରର ଜୁଆରଭଟ୍ଟା ପରି ଅନବରତ ଅଦଳ-ବଦଳ ହେଉଥାଏ । ପ୍ରମୋଦବୋଧ କମିଗଲାକ୍ଷଣି ବିଷଣ୍ଣତା ଦେଖାଦିଏ ଏବଂ ବିଷଣ୍ଣତାର ଅବସାନ ପରେ ମଣିଷ ପ୍ରଫୁଲ୍ଲଭାବ ଧାରଣ କରେ। ବିଦ୍ରୋହୀ ଏବଂ ଅତୃପ୍ତ ଇଚ୍ଛାମାନଙ୍କର ବିବେକ ସଙ୍ଗରେ ସଂଘର୍ଷ, ଅତୃପ୍ତ ଇଚ୍ଛାମାନଙ୍କର ପରସ୍ପର ସଙ୍ଗେ ସଂଘର୍ଷ ହେତୁ ଏହି ଦୁଇ ମେଜାଜର ଘନ ଘନ ଅଦଳବଦଳ ହୁଏ। ଫ୍ରଏଡ଼ଙ୍କ ମତରେ ମନ ଆନନ୍ଦ-ପ୍ରୟାସୀ ଅର୍ଥାତ୍ ମନ ଆନନ୍ଦ, ସୁଖ, ସନ୍ତୋଷ ଏବଂ ଆହ୍ଲାଦ ଚାହେଁ ଓ ଦୁଃଖ କଷ୍ଟ ଯନ୍ତ୍ରଣା ଏଡ଼ିବାକୁ ଇଚ୍ଛା କରେ। ଅନ୍ୟ କଥାରେ ଇଚ୍ଛାର ତୃପ୍ତି ଘଟିଲେ ଆନନ୍ଦ ହୁଏ; ଇଚ୍ଛାର ଅବରୋଧ ଏବଂ ଅତୃପ୍ତି ଘଟିଲେ ଯନ୍ତ୍ରଣା ହୁଏ। ମାତ୍ର ମଣିଷର ଇଚ୍ଛାଗୁଡ଼ିକ ପରସ୍ପରବିରୋଧୀ। ଗୋଟିଏ ଇଚ୍ଛାର ତୃପ୍ତି ହେଲେ ଅନ୍ୟ ଏକ ଇଚ୍ଛାର ଅତୃପ୍ତି ଘଟେ । ଦୃଷ୍ଟାନ୍ତସ୍ୱରୂପ ବଂଶରକ୍ଷାପ୍ରବୃତ୍ତି ଏବଂ ଆତ୍ମରକ୍ଷାପ୍ରବୃତ୍ତି ( Instinct of Race-preservation and Instinct of Self-preservation ) ପରସ୍ପର ବିରୋଧୀ। ମଣିଷ ନିଜର ସ୍ୱାର୍ଥକୁ ଜଗିଲାକ୍ଷଣି ନିଜର ସ୍ତ୍ରୀ ପୁତ୍ରଙ୍କ ସ୍ୱାର୍ଥରେ ବାଧା ଦିଏ ; ସ୍ତ୍ରୀ ପୁତ୍ରଙ୍କ ସ୍ୱାର୍ଥକୁ ଦେଖିବାକୁ ଗଲେ ନିଜ ସ୍ୱାର୍ଥକୁ ଦଳି ଦେବାକୁ ହୁଏ। ଜାତିର କଲ୍ୟାଣ କରିବାକୁ ଗଲେ ମଣିଷକୁ ଅପାରର ସ୍ୱାର୍ଥତ୍ୟାଗ କରିବାକୁ ହୁଏ ।

ନିଜର ସ୍ୱାର୍ଥକୁ ଜଗି ଚାଲିଲେ ସମଷ୍ଟିର ଅକଲ୍ୟାଣ ହୁଏ । ଏଣୁ ପରସ୍ପରବିରୋଧୀ ଇଚ୍ଛାମାନଙ୍କ ମଧ୍ୟରେ ଯେଉଁ ସଂଘର୍ଷ ହୁଏ, ସେହି ସଂଘର୍ଷକୁ ମାନସିକ ଦ୍ୱନ୍ଦ୍ୱ କୁହାଯାଏ । ଦ୍ୱନ୍ଦ୍ୱର ସାମୟିକ ଉପଶମରେ ଆନନ୍ଦ ବା ପ୍ରମୋଦବୋଧ ଘଟେ । ମାତ୍ର ଅସୀମ ତୃଷ୍ଣାର କବଳରେ ପଡ଼ି କେହି ମାନସିକ ଦ୍ୱନ୍ଦ୍ୱରୁ ଅବ୍ୟାହତି ପାଏ ନାହିଁ । ଏଣୁ ପ୍ରମୋଦବୋଧ କ୍ଷଣକାଳସ୍ଥାୟୀ ହୋଇ ତାହା ବିଷାଦରେ ପରିଣତ ହୁଏ । ଏହି ବିଷାଦ କିଛିକ୍ଷଣ ସ୍ଥାୟୀ ହେବା ପରେ ପୁନର୍ବାର ପ୍ରମୋଦବୋଧର ଆବିର୍ଭାବ ଘଟେ । ମାତ୍ର ଏହି ପ୍ରମୋଦବୋଧ ପୂର୍ବଠାରୁ ପ୍ରବଳତର ହୁଏ ; ଏହି ପ୍ରମୋଦବୋଧର ବିରାମ ପରେ ଯେତେବେଳେ ବିଷାଦର ଆଗମନ ଘଟେ, ପୂର୍ବବର୍ତ୍ତୀ ପ୍ରମୋଦକୁ ବଳିଯିବା ପାଇଁ ଏହା ପୂର୍ବଠାରୁ ପ୍ରବଳତର ହୁଏ । ପ୍ରମୋଦବୋଧ ଏବଂ ବିଷାଦବୋଧ ଏହିରୂପେ ପରସ୍ପରକୁ ହଟାଇବା ପାଇଁ ବେଳକୁବେଳ ପ୍ରବଳତର ହୁଅନ୍ତି । ଏହି ଦୁଇ ମାନସିକ ଦ୍ୱନ୍ଦ୍ୱର କବଳରେ ପଡ଼ି କେହି କେହି ବେଳେ ବେଳେ ଖୁବ ମତ୍ତ ଓ ବିହ୍ୱଳ ହୋଇ ପଡ଼ନ୍ତି ଏବଂ ବେଳେ ବେଳେ ଅତମାତ୍ରାରେ କୌଣସି କାରଣ ନ ଥିଲେ ମଧ୍ୟ ଖୁବ ବିଷଣ୍ଣ ଦେଖାଯାନ୍ତି । ପୁଣି କାହାର କାହାଠାରେ ପ୍ରମତ୍ତଭାବ ବେଶୀ ଦେଖାଯାଏ ଓ କାହାର କାହାଠାରେ ବିଷଣ୍ଣତା ବେଶୀ ଦେଖାଯାଏ ପରପୀଡ଼କ (A saddist) ବେଶୀ ପ୍ରମତ୍ତ, ମାତ୍ର ଆତ୍ମପୀଡ଼କ ବେଶୀ ବିଷଣ୍ଣ ।

ପ୍ରମତ୍ତତା ଏବଂ ବିଷଣ୍ଣତା ଏହି ଦୁଇ ବିକୃତି ମଧ୍ୟରୁ କୌଣସି ଗୋଟିକ କବଳରେ ମଣିଷ ପଡ଼ିଲେ ସେ ବଡ଼ ଅଧୀରଚିତ୍ତ ହୁଏ ; ମଣିଷ ଆଗ ପଛ କିଛି ନ ବିଚାରି କୌଣସି କାର୍ଯ୍ୟ କରିପକାଏ ; ଏହି କାର୍ଯ୍ୟର ଫଳ ପ୍ରାୟଶଃ ତାହାର ଆଶାନୁରୂପ ହୁଏ ନାହିଁ ; ଏଣୁ ସେ ପୂର୍ବଠାରୁ ଅଧିକ ଉନ୍ମତ୍ତ ଓ ବିଷଣ୍ଣ ହୁଏ । ପ୍ରମତ୍ତତା ବିକୃତିଗ୍ରସ୍ତ

ବ୍ୟକ୍ତି ବଡ଼ ଅସହିଷ୍ଣୁ ; ସେ ସାମାନ୍ୟ କଥାରେ ରାଗିଯାଏ ; ତାହାର ନିର୍ଦ୍ଦେଶ ଅନୁସାରେ କୌଣସି କାର୍ଯ୍ୟ ନ ହେଲେ ସେ ଅସହିଷ୍ଣୁ ହୋଇପଡ଼େ । ଏହି ବିକୃତଗ୍ରସ୍ତ ବ୍ୟକ୍ତିର ବିବେକଶକ୍ତି ଦୁର୍ବଳ ଥାଏ ; ଏଣୁ ସେ ଆପଣାର ଗୃହଚ୍ଛିଦ୍ର ଏବଂ ଆପଣାର ସ୍ତ୍ରୀ ପୁତ୍ରର ଦୁର୍ନାମ ଅନ୍ୟ ସମକ୍ଷରେ ପ୍ରକାଶ କରେ ; ଏପରି କି ନିଜର କୁକ୍ରିୟା ଓ ପାପାଚରଣ ଅନ୍ୟ ସମକ୍ଷରେ ପ୍ରକାଶ କରି ଆତ୍ମତୃପ୍ତି ଲାଭ କରେ । ଏଣୁ ପ୍ରମତ୍ତ ବ୍ୟକ୍ତି ସ୍ପଷ୍ଟବାଦୀ, ମାତ୍ର ତାହାର ସ୍ପଷ୍ଟବାଦିତା ବିକୃତ ଧରଣର । ପ୍ରମତ୍ତ ବ୍ୟକ୍ତି ଚିରଅସ୍ଥିର ; ସେ ଗୋଟିଏ କାର୍ଯ୍ୟରେ ହାତ ଦେଇ ତାହା ପରିସମାପ୍ତ ନ ହେଉଣୁ ତାହାକୁ ଛାଡ଼ିଦେଇ ଅନ୍ୟ ଗୋଟିଏ କାର୍ଯ୍ୟରେ ହାତ ଦିଏ । ସେ ଗୋଟିଏ ପ୍ରକାର ବ୍ୟବସାୟ କରୁ କରୁ ତାହା ଛାଡ଼ିଦେଇ ଅନ୍ୟ ଏକ ବ୍ୟବସାୟ ଧରେ । ଗୃହକର୍ମ ଯେପରି ସେ ଗୋଟିଏ ପ୍ରକାର ଚାକିରିରେ ସନ୍ତୁଷ୍ଟ ନ ହୋଇ ଦରଖାସ୍ତ ପରେ ଦରଖାସ୍ତ ପଠାଏ । କୌଣସି ପ୍ରକାର ଅସ୍ୱାଭାବିକ ବା ଉତ୍ତେଜନାମୂଳକ କାର୍ଯ୍ୟ କରିବାକୁ ସେ ବଡ଼ ଆଗ୍ରହ ଦେଖାଏ । ପ୍ରମତ୍ତ ବ୍ୟକ୍ତି ବଡ଼ କୁତ୍ସାରଟନାକାରୀ ; ସେ ସଙ୍ଗୀମାନଙ୍କ ମଧ୍ୟରେ ପରସ୍ପରର କୁତ୍ସାରଟନା କରି ସେମାନଙ୍କ ମଧ୍ୟରେ କଳହ ଲଗାଇଦେଇ ମଜା ଦେଖେ । ପ୍ରମତ୍ତ ବ୍ୟକ୍ତି ମାଦକଦ୍ରବ୍ୟ ସେବନର ପକ୍ଷପାତୀ ; ଭାଙ୍ଗ, ଅଫିମ, ଗଞ୍ଜା ମଦ୍ୟ ପ୍ରଭୃତି ସେବନ କରି ସେ ସର୍ବଦା ନିଜର ମନକୁ ତାଜା ରଖିବାକୁ ଚାହେଁ । ତାହାର ମନ ଭିତରେ ନୈରାଶ୍ୟ ଲୁଚି ରହିଥାଏ, ମାତ୍ର ଏହି ନୈରାଶ୍ୟକୁ ଏଡ଼ାଇବାକୁ ସେ ଆଶାବାଦୀ ( Optimist ) ଓ ବେପରବାୟ ହୁଏ ।

ପ୍ରମତ୍ତ ବ୍ୟକ୍ତି ବଡ଼ କାମୁକ, ସେ ଅତର ଲଗାଏ, କାନରେ ସୁଗନ୍ଧ ଫୁଲ ଖୋସେ; ମୁହଁରେ ପାଉଡ଼ର ମାଖେ । ପ୍ରମତ୍ତ ବ୍ୟକ୍ତି ବଡ଼ କାମିନୀରଞ୍ଜକ ଓ ସ୍ତ୍ରୈଣ ; ସ୍ତ୍ରୀ ମେଳରେ ରହିବାକୁ ସେ ସୁଖକର

ମନ୍ଥନ କରେ । ପ୍ରମତ୍ତ ବ୍ୟକ୍ତି ବଡ଼ ନିଦ୍ରାଳୁ, ଦୀର୍ଘ ସମୟ ଧରି ଶୋଇଲେ ମଧ୍ୟ ତାହାର ନିଦ୍ରାର ତୃପ୍ତି ଘଟେ ନାହିଁ ; ବିଛଣା ଧରିବା ମାତ୍ରେ ତାହାର ନାସିକାଧ୍ୱନି ଆରମ୍ଭ ହୁଏ । ସେ ସର୍ବପ୍ରକାର ଆମୋଦ ପ୍ରମୋଦରେ ନିଜକୁ ମଜାଇ ରଖେ । ଅନ୍ୟର ଗୃହରେ ଭୋଜିରେ ଯୋଗ ଦେବାକୁ ବା ସଙ୍ଗୀଙ୍କୁ ପ୍ରବଞ୍ଚାଇ ତାହାଠାରୁ ଭୋଜି ଆଦାୟ କରିବାକୁ ପ୍ରମତ୍ତ ବ୍ୟକ୍ତିର ଆନନ୍ଦ କହିଲେ ନ ସରେ । ଖୁବ୍ ଅଧିକ ରାତିରେ ଭୋଜିଭାତ ଖାଇ, ବା ଖୁବ୍ ଅଧିକ ରାତି ପର୍ଯ୍ୟନ୍ତ ଜାଗ୍ରତ ହୋଇ ସେ ନାଚ ମୁଜରା ଦେଖିବା ପରେ ଦୁଇ ତିନିଦିନ କାଳ କ୍ରମାଗତ ଶୋଇ ରହେ, ତେବେ ଯାଇଁ ତାହାର ଅବସାଦ ମେଣ୍ଟେ ।

ପକ୍ଷାନ୍ତରେ ବିଷଣ୍ଣତା-ବିକୃତଗ୍ରସ୍ତ ବ୍ୟକ୍ତି ଆମୋଦପ୍ରମୋଦ, ଭୋଜି ଇତ୍ୟାଦିକୁ ଭଲ ପାଏ ନାହିଁ ; ଏଥିରେ ଅଧିକ ରାତି ଜାଗରଣ ଏବଂ ଲୋଭରେ ପଡ଼ି ସୁସ୍ୱାଦୁ ଭୋଜ୍ୟ ବେଶୀ ଖାଇଲେ ସ୍ୱାସ୍ଥ୍ୟଭଙ୍ଗ ହେବ ବୋଲି ସେ ପ୍ରମାଦ ଗଣେ । ସ୍ୱାସ୍ଥ୍ୟକୁ ଇଡ଼ିବା ପାଇଁ ସେ ଖାଦ୍ୟ ଓ ସମୟକୁ ଠିକ୍ ଭାବରେ ଜଗି ଚାଲେ ; ତଥାପି ତାହାର ପେଟର ଗୋଳମାଳ ସର୍ବଦା ଲାଗି ରହିଥାଏ ; କୋଷ୍ଠବଦ୍ଧତା ହେତୁ ପ୍ରତ୍ୟେକ ଭୋଜନର ପୂର୍ବରୁ ସେ ପାଇଖାନା ଯାଏ ଏବଂ ସଙ୍ଗୀମାନଙ୍କ ପାଖରେ ବାରମ୍ବାର ଅଭିଯୋଗ କରେ, "ଝାଡ଼ାଟା ଜମା ସଫା ହେଉନି ନାହିଁ ।" କୌଣସି ବିଷୟର କଥା ଆରମ୍ଭ କରି ଶେଷରେ କୋଷ୍ଠ-ବଦ୍ଧତା ବିଷୟ କହି ଏ ବିଷୟର ପରିସମାପ୍ତି କରେ । ସେ ସଙ୍ଗୀ ମେଳରେ ବକ୍ତୃତା ଦେଲାବେଳେ କହେ, "ଯାହାର କୋଷ୍ଠବଦ୍ଧତା ନାହିଁ, ତାହାର ସବୁ ଅଛି ଓ ସେହି ବ୍ୟକ୍ତି ସ୍ୱାସ୍ଥ୍ୟ, ବିଦ୍ୟା, ଧନ ସମ୍ପଦର ଅଧିକାରୀ ହୋଇ ପାରେ ।" ସେ ଚଟ୍ ଚଟ୍ ରାତିରେ ଖାଇଦେଇ ଠିକ ୯ଟା ବେଳକୁ ଶୋଇବାକୁ ଯାଏ; ତଥାପି

ତାହାର ଅନେକ ବେଳ ପର୍ଯ୍ୟନ୍ତ ନିଦ୍ରା ହୁଏ ନାହିଁ ଏବଂ ସକାଳେ ଉଠିବା ପରେ ସେ ପୂର୍ବଠାରୁ ବେଶୀ ବିଷଣ୍ଣ ଦେଖାଯାଏ । ବିଷଣ୍ଣତା ବିକୃତଗ୍ରସ୍ତ ବ୍ୟକ୍ତି ପେଟ ଖୋଲସା କରିବା ପାଇଁ ବାରମ୍ବାର ପାଇଖାନାକୁ ଯିବା ସତ୍ତ୍ୱେ ତାହାର ଯେପରି ପେଟ ଖୋଲସା ହୋଇ ପାରେ ନାହିଁ, ଠିକ ସେହିପରି ତାହାର ମନଟି କେବେ ଖୋଲସା ହୋଇ ପାରେ ନାହିଁ । ସେ କେବେ ଖୋଲି ଖୋଲି କରି କଥାଟା ପ୍ରକାଶ କରି ପାରେ ନାହିଁ । ତାହାର କଥାର ଭଙ୍ଗୀରୁ ହଁ ଓ ନାହିଁ ଉଭୟ ସୂଚିତ ହୁଏ । ମାନ ପ୍ରମତ୍ତ ବ୍ୟକ୍ତି ବହୁତ କଥା କହିଯାଏ ଏବଂ ତାହାର କଥାରେ ଅତିରଞ୍ଜିତ ଭାବ ଓ ବାହୁଲ୍ୟ ଥାଏ । ବିଷଣ୍ଣ ବ୍ୟକ୍ତିଠାରେ ଆତ୍ମନିର୍ଭରଶୀଳତ୍ୱର ବଡ଼ ଅଭାବ ଦେଖାଯାଏ ; ପ୍ରତ୍ୟେକ କାର୍ଯ୍ୟରେ ସେ ନୈରାଶ୍ୟ ଦେଖେ ; ଯଦି ତାହାକୁ ନୈରାଶ୍ୟକର, ଅପ୍ରୀତିକର ଓ ଭୟଙ୍କର ଦେଖାଯାଏ । ଶୋଇବା-ବେଳେ ସେ ମୃତ୍ୟୁର ବିଭୀଷିକାରେ ଆତଙ୍କିତ ହୁଏ । ପେଟ ସଫା ହେଉ ନ ଥିବାରୁ ଦିନେ ନା ଦିନେ ତାହାର ହଠାତ୍ କୌଣସି ଭୟଙ୍କର ରୋଗ ଘଟିବ ବୋଲି ସେ ଆଶଙ୍କା କରେ । ତାହାର ମୃତ୍ୟୁ ବିଭୀଷିକା ଓ ଆତ୍ମନିର୍ଭରଶୀଳତ୍ୱର ଅଭାବର ଗୋଟିଏ କାରଣ ତାହାର କୋଷ୍ଠବଦ୍ଧତା । ସର୍ବଦା ପେଟକଥା ଭାବୁଥିବା ବ୍ୟକ୍ତିକୁ ହାଇପୋକଣ୍ଡ୍ରି-ଆକ୍ (Hypochondriac) କୁହାଯାଏ ।

ବିଷଣ୍ଣ ବ୍ୟକ୍ତି ତାହାର ସ୍ୱାସ୍ଥ୍ୟ ସମ୍ବନ୍ଧରେ ବିଶେଷ ଚିନ୍ତିତ ହୁଏ । ଏଣୁ ଆହାର, ନିଦ୍ରା ମୈଥୁନାଦିରେ ସେ ସଂଯମ ରଖିବାକୁ ଚେଷ୍ଟା କରେ । ସେ ଆହାର୍ଯ୍ୟ ଦ୍ରବ୍ୟକୁ ଦୀର୍ଘ ସମୟ ଧରି ଚୋବାଇ ଖାଏ ; ମସଲା ନ ଦେଇ ସିଝା ତରକାରି ଖାଏ । ଫଳରେ ବହୁତ ଭିଟାମିନ୍ ଓ ଖାଦ୍ୟସାର ଅଛି ବୋଲି ବହିରେ ପଢ଼ି ପ୍ରତ୍ୟହ ଫଳ କିଣି ଖାଏ । ପାଞ୍ଜିରେ ଯେଉଁ ଯେଉଁ ଦିନ ଯାହା ଖାଇବା ନିଷେଧ

ଥାଏ, ଯେହେତୁ ସେହି ଦିନ ତାହା ଖାଏ ନାହିଁ । ଶାସ୍ତ୍ରରେ ଯେଉଁ ଯେଉଁ ଦିନ ସ୍ତ୍ରୀସହବାସ କରିବା ନିଷେଧ ଅଛି, ସେହି ସେହି ଦିନ ଉକ୍ତ ନିଷେଧ ମାନିବାକୁ ପ୍ରତିଜ୍ଞାବଦ୍ଧ ହୁଏ ଏବଂ ଅନ୍ୟ କୋଠରିରେ ଏକାକୀ ଶୟନ କରେ । ଏହି ପ୍ରତିଜ୍ଞା ତାହାର ଅନେକ ସମୟରେ ଭଙ୍ଗ ହୁଏ । ହସ୍ତମୈଥୁନର କୁଫଳରୁ ବିଷଣ୍ଣତାବିକୃତି ଜାତ ହୁଏ ବୋଲି କେହି କେହି କହନ୍ତି । ମାତ୍ର ବିଷଣ୍ଣତାବିକୃତି ହେତୁ ବ୍ୟକ୍ତିବିଶେଷ ପ୍ରଥମ ଯୌବନରେ ଅସ୍ୱାଭାବିକ ହସ୍ତମୈଥୁନ କରି ସାମୟିକ ପ୍ରମୋଦ ଲାଭ କରେ । ମାତ୍ର ମୈଥୁନକ୍ରିୟାର ସମାପ୍ତି ପରେ ଯେଉଁ ବିଷାଦ ଘଟେ ତାହା ପୂର୍ବଠାରୁ ତୀବ୍ରତର ହୁଏ । ଏଣୁ ହସ୍ତ-ମୈଥୁନାନ୍ତେ ବ୍ୟକ୍ତିବିଶେଷ ବିଷାଦ ଓ ଆତଙ୍କରେ ପ୍ରତିଜ୍ଞା କରି ପକାଏ ଯେ ସେ ଏପରି କାର୍ଯ୍ୟ ଭବିଷ୍ୟତରେ କରିବ ନାହିଁ । ମାତ୍ର ଦୁର୍ଦ୍ଦମନୀୟ ପ୍ରବୃତ୍ତି ଯୌନାକାଙ୍କ୍ଷାରୁ ତାହାର ବିଷାଦ ତୀବ୍ରତର ହୁଅନ୍ତେ, ଏହି ବିଷାଦକୁ ଦୂର କରିବା ପାଇଁ ତାହାର ହସ୍ତ ଯନ୍ତ୍ରଚାଳିତବତ୍ ପୁନଶ୍ଚ ଉକ୍ତ ଗର୍ହିତ କାର୍ଯ୍ୟରେ ପ୍ରବୃତ୍ତ ହୁଏ ।

ଉନ୍ମତ୍ତ ବ୍ୟକ୍ତିକୁ କେହି କିଛି ପଚାରିଲେ ପ୍ରଶ୍ନଟି ଶେଷ ନ ହେଉଣୁ ହଠାତ୍ ସେ ତାହାର ଉତ୍ତର ଦେଇ ପକାଏ । ବିଷଣ୍ଣ ବ୍ୟକ୍ତି ପ୍ରଶ୍ନକର୍ତ୍ତାର ପ୍ରଶ୍ନ ସରିଲା ପରେ କିଛି ସମୟ ମୌନ ହୋଇ ତା ପ୍ରଶ୍ନର ପୁନରୁକ୍ତି କରି ଉତ୍ତର ଦିଏ । ଉନ୍ମତ୍ତ ବ୍ୟକ୍ତି ସର୍ବଜ୍ଞାନ୍ତା ପରି ନିଜକୁ ପ୍ରକାଶ କରେ; ବିଷଣ୍ଣ ବ୍ୟକ୍ତି ଆପାତତଃ ନିର୍ବୋଧ ପରି ବା ଶୋକବିହ୍ୱଳ ପରି ଦେଖାଯାଏ । ଉନ୍ମତ୍ତ ଓ ବିଷଣ୍ଣ ଉଭୟ ବ୍ୟକ୍ତି କଥା କହିବା ବେଳେ ବିଗିଲା ପରି ଜଣାଯାଏ ; ଉନ୍ମତ୍ତ ବ୍ୟକ୍ତିର କଥାଗୁଡ଼ାକ ଯେପରି କି ଶ୍ରୋତାର କାନରେ ଠାଏ ଠାଏ ବାଜେ; ବିଷଣ୍ଣ ବ୍ୟକ୍ତିର କଥା ବ୍ୟଙ୍ଗ ବା ବିଦ୍ରୂପ କଲା ପରି ଜଣାଯାଏ ।

ବିଷଣ୍ଣ ବ୍ୟକ୍ତିକୁ ଆଶ୍ୱାସନା ଦେଲେ ସେ କ୍ରୁଦ୍ଧ ହୁଏ; ଆଶ୍ୱାସନାକୁ ସେ ପରିହାସ ମନେ କରେ। ବିଷଣ୍ଣ ଶିଶୁ ବଡ଼ କ୍ରନ୍ଦନଶୀଳ। ତାହାକୁ ଆଶ୍ୱାସନା କଲେ ବା କାତେଇଲେ, ସେ ବେଶୀ କାନ୍ଦେ। ବିଷାଦଗ୍ରସ୍ତ ବ୍ୟକ୍ତି କଥା କହୁ କହୁ କାନ୍ଦେ, ସାମାନ୍ୟ ସହାନୁଭୂତି ଦେଖାଇଲେ ଆଖିକୁ ଅଶ୍ରୁସିକ୍ତ କରି ପକାଏ। ବିଷାଦଗ୍ରସ୍ତର ମନଟା ବଡ଼ ଗୋଳମାଳିଆ; ସେ ସ୍ପଷ୍ଟ ଭାବରେ ଚିନ୍ତା କରି ପାରେ ନାହିଁ; ସ୍ପଷ୍ଟ କଥା କହି ପାରେ ନାହିଁ। ସେ ବଡ଼ ମଠୁଆ; ତାହାର ସ୍ୱଚ୍ଛବୋଧ କିମ୍ବା ମୂଢ଼ୁଗତିବିଶିଷ୍ଟ ଏବଂ ତାହା ବହୁତ ଡେରିରେ ସମ୍ପନ୍ନ ହୁଏ।

ବିଷାଦଗ୍ରସ୍ତ ବ୍ୟକ୍ତି ସଦା ଉଦ୍‌ବିଗ୍ନ; ସର୍ବଦା ସେ ଚିନ୍ତିତ ଥିବା ପରି ଜଣାଯାଏ। ସେ ନିଜକୁ କରୁଣାର ପାତ୍ର ଓ ଅପଦାର୍ଥ ଭାବେ; ସେ ନିଜକୁ ନିଜେ ଦୟା କରେ। ସେ ନିଜକୁ ଅତି ଅସହାୟ ଓ ପରିତ୍ୟକ୍ତ ମନେ କରେ; ଅଭିମାନ କରି ଭଗବାନଙ୍କୁ ଗାଳି ଦିଏ ବା ଭଗବାନ ବୋଲି କେହି ନାହିଁ ବୋଲି କହେ। ତାହାର ଜୀବନ ଘୋର ନୈରାଶ୍ୟମୟ ଏବଂ ବିରକ୍ତିପୂର୍ଣ୍ଣ। ସହଜରେ ସେ କାହାରି ଉପରେ ନ ରାଗିଲେ ମଧ୍ୟ ସହଜରେ ଅନ୍ୟ ଉପରେ ବିରକ୍ତ ହୋଇ ପଡ଼େ। ମାନସିକ ଅବସାଦ ଓ ଦୁର୍ବଳତା ହେତୁ ସେ ନିଜକୁ ନିଜେ ଭର୍ତ୍ସନା କରି ଶୀଘ୍ର ମରିବାକୁ ଇଚ୍ଛା ପ୍ରକାଶ କରେ।

ଉନ୍ମତ୍ତ ବ୍ୟକ୍ତି ସହଜରେ ରାଗେ ଏବଂ ସହଜରେ ତୁଷ୍ଟ ହୁଏ। ସେ କ୍ରୋଧରେ ଆତ୍ମଜ୍ଞାନଶୂନ୍ୟ ହୋଇଯାଏ। କ୍ରୋଧରେ ଦାନ୍ତ ରଗଡ଼ି ଘର ଭିତରେ ସେ ଦାଣ୍ଡିଆ ମାରେ ବା ହାମୁଡ଼େଇ ଚାଲେ; କ୍ରୋଧରେ ତାହାର ଆଖି ଝାପ୍‌ସା ହୋଇଯାଏ, ହାତ ଗୋଡ଼ ଥରେ; ଅଥଚ କ୍ରୋଧ ଓ ଭାବପ୍ରବଣତା ହେତୁରୁ ଉନ୍ମତ୍ତ ବ୍ୟକ୍ତିର ମୁଖରୁ ଉନ୍ନତ ଚିନ୍ତାଧାରା ଓ ଓଜସ୍ୱିନୀ ବକ୍ତୃତା ନିର୍ଗତ ହୁଏ। ଉନ୍ମତ୍ତ ଶିଶୁ

ସାମାନ୍ୟ କାରଣରୁ ବାପେ ଓ ମାଆଙ୍କୁ ମାରଧର କରେ । ଉନ୍ମତ୍ତ-ସ୍ୱଭାବ ଛାତ୍ରର କଥାରେ ସଂଯମ ନ ଥାଏ ; ସେ କଅଣ ବୋଲି କଅଣ କହିଯାଏ, ଶିକ୍ଷକ ତାହାର ଅସଂଯତ କଥାରେ ନିଜକୁ ଅପମାନିତ ବୋଧ କରେ । ସେ ଜାଣି ଶୁଣି ଶିକ୍ଷକଙ୍କୁ ଅପମାନ ଦିଏ ନାହିଁ, ମାତ୍ର ତାହାର କଥାବାର୍ତ୍ତାର ଭଙ୍ଗୀ ହିଁ ଅପମାନକର ବୋଧ ହୁଏ । ଉନ୍ମତ୍ତ ଛାତ୍ର ସର୍ବଦା ଚଞ୍ଚଳଚିତ୍ତ ; ତାହାର ହାତ ଗୋଡ଼ ସବୁବେଳେ ଖେଳି-ବାକୁ ହେଉଥାଏ ; ସେ ଗୋଟିଏ ସ୍ଥାନରେ ସ୍ଥିର ହୋଇ ବସି ପାରେ ନାହିଁ କି କୌଣସି ବିଷୟ ମନଦେଇ ଶୁଣି ପାରେ ନାହିଁ । ବିଷାଦଗ୍ରସ୍ତ ଛାତ୍ରର ମନ ମଧ୍ୟ ସର୍ବଦା ଅସ୍ଥିର ; ମାତ୍ର ଘୋର ବିଷାଦ ହେତୁରୁ ତାହାର ମନର ସ୍ଥିରତା ରହି ପାରେ ନାହିଁ । ମାତ୍ର ଉନ୍ମତ୍ତ ଛାତ୍ରର ମନ ବାହାରର ଆମୋଦପ୍ରମୋଦ ପାଇଁ ଏତେ ବ୍ୟସ୍ତ ଥାଏ ଯେ ସଂକୀର୍ଣ୍ଣ ଶ୍ରେଣୀପ୍ରକୋଷ୍ଠ ତାହାର ମାନସିକ ସ୍ଥିରତାକୁ ନଷ୍ଟ କରିଦିଏ ବା ଗୋଟିଏ ମାତ୍ର କାର୍ଯ୍ୟରେ ଅଧିକ ସମୟ ଲିପ୍ତ ହେଲେ ସେ ଧୀର-ସ୍ଥିର ରହିପାରେ ନାହିଁ ।

ଉନ୍ମତ୍ତ ବ୍ୟକ୍ତିର ପ୍ରତ୍ୟେକ ଆଚରଣ ଦ୍ରୁତଗତିବିଶିଷ୍ଟ, ମାତ୍ର ବିଷଣ୍ଣ ବ୍ୟକ୍ତିର କାର୍ଯ୍ୟ ବଡ଼ ମଠ ମଠ । ସାଧାରଣ ବ୍ୟକ୍ତିର ଆହାରକ୍ରିୟା ସମାପ୍ତ ହେବାକୁ ଅଧଘଣ୍ଟା ଲାଗିଲେ, ବିଷାଦଗ୍ରସ୍ତ ବ୍ୟକ୍ତି ପକ୍ଷେ ଆହାରକ୍ରିୟା ସମାପ୍ତି କରିବାକୁ ପ୍ରାୟ ଦେଢ଼ଘଣ୍ଟା ଲାଗେ ; ମାତ୍ର ଉନ୍ମତ୍ତ ବ୍ୟକ୍ତି ଦଶ ମିନିଟ ମଧ୍ୟରେ ତାହାର ଖାଇବା କାର୍ଯ୍ୟ ଶେଷ କରି ପକାଏ । ବିଷଣ୍ଣ ବ୍ୟକ୍ତିକି ଦିନଗୁଡ଼ିକ ବଡ଼ ଅସରନ୍ତି ବୋଧ ହୁଏ । ମାତ୍ର ଦିନର ଘଣ୍ଟା ସବୁ କିପରି ଯେ ଦ୍ରୁତ ଗତିରେ ପଳାଇଯାଏ, ତାହା ଉନ୍ମତ୍ତ ବ୍ୟକ୍ତିକୁ ଜଣା ପଡ଼େ ନାହିଁ । ଉନ୍ମତ୍ତ ବ୍ୟକ୍ତି ସର୍ବଦା କୌଣସି ନା କୌଣସି କାର୍ଯ୍ୟରେ ଦ୍ରୁତ-ଗତିରେ ବ୍ୟସ୍ତ ଥାଏ ; ତାହାର ଚାଲିଚଳନ କଥାବାର୍ତ୍ତାରୁ ଜଣାଯାଏ,

ସେ ଯେପରିକି ଭାରି କାର୍ଯ୍ୟବ୍ୟସ୍ତ ଓ ତାହାର ମୁହୂର୍ତ୍ତେ ମାତ୍ର ଫୁରୁସତ ନ ଥାଏ । ବହୁତ କାର୍ଯ୍ୟରେ ହାତ ଦେଇଥିବାରୁ ଜଲଦ୍ର ବ୍ୟକ୍ତି ତାହାର ପୋଷାକ ପରିଚ୍ଛଦ, ଆହାରବିହାରାଦିର କୌଣସି ତତ୍ତ୍ୱ ନିଏ ନାହିଁ । ପରିଷ୍କାର ପରିଚ୍ଛନ୍ନତା ଜଲଦ୍ର ବ୍ୟକ୍ତିପକ୍ଷରେ ଯେପରି କ କର୍ତ୍ତବ୍ୟ ବୋଲି ବିବେଚିତ ହୁଏ ନାହିଁ । ଏଣୁ ନିର୍ବିକାରଭାବରେ ସେ ମଇଳା ତେଲଚିକଟା ଲୁଗା ଓ ମଇଳା କମିଜ, କୋଟ ପିନ୍ଧି ଥିବାର ଦେଖାଯାଏ । ତାର ଜାମାରେ ଯେ ବୋତାମ ନାହିଁ, ତାହାର ପିନ୍ଧିଲା ଲୁଗା ଯେ ଚିରି ଯାଇଛି, ତହିଁକି ତାହାର ଲକ୍ଷ୍ୟ ନ ଥାଏ । ତାହାର କୌଣସି କାର୍ଯ୍ୟରେ ଶୃଙ୍ଖଳା ନ ଥାଏ । ଲେଖକ ବା ପାଠକ ଜଲଦ୍ର ବିକୃତଗ୍ରସ୍ତ ହେଲେ ତାହାର ପୁସ୍ତକମାନ କୋଠରୀରେ ଇତସ୍ତତଃ ବିକ୍ଷିପ୍ତ ହୋଇଥାଏ । ତାହାର ବିଛଣା ଗୃହର, ଲୁଗାପଟା ଓ ଘରର ଅନ୍ୟାନ୍ୟ ଆସବାବପତ୍ର ଇତସ୍ତତଃ ବିଶୃଙ୍ଖଳ ଭାବେ ବିନ୍ୟସ୍ତ ହୋଇଥାଏ । ଜଲଦ୍ର ଛାତ୍ର ତାହାର ବହିପତ୍ର କାଗଜ ପେନ୍‌ସିଲର କୌଣସି ଯତ୍ନ ନିଏ ନାହିଁ ; ବହିପତ୍ର ଗୁଡ଼ିକ ତାର ବଡ଼ ମଇଳା ; ପୃଷ୍ଠାମାନଙ୍କରେ କାଳି ଓ ପେନ୍‌ସିଲ ଦାଗ ପଡ଼ିଥାଏ, ଅନେକ ସ୍ଥାନରେ ଗାରିମାରି ହୋଇଥାଏ । ଏହି ମଇଳା ଓ ଗାରିମାରି ବହି, ଖାତାଗୁଡ଼ିକ ଜଲଦ୍ର ଛାତ୍ରର ମାନସିକ ଅବସ୍ଥାର ଦର୍ପଣସ୍ୱରୂପ । ଏହା ତାହାର ବିଶୃଙ୍ଖଳ ଓ ଗୋଳମାଳିଆ ମନର ପରିଚୟ ଦିଏ ।

ପ୍ରତ୍ୟେକ କାର୍ଯ୍ୟରେ ଅଭିଯୋଗ କରିବା ଓ ଉଦ୍‌ବେଗ ପ୍ରକାଶ କରିବା ବଷଣ୍ଡ ବ୍ୟକ୍ତିର ଗୋଟାଏ ପ୍ରକୃତି । ବଷଣ୍ଡ ବ୍ୟକ୍ତି ମୁହଁଟାକୁ ସବୁବେଳେ କୁଞ୍ଚୁଣ୍ଡା କରିଥାଏ ; ସେ କାହାରିରେ ସନ୍ତୁଷ୍ଟ ହୁଏ ନାହିଁ । ଖାଦ୍ୟରେ ସେ ନାନାପ୍ରକାର ଦୋଷ ଦେଖି ପାଚକ ବା ନିଜର ରାନ୍ଧୁଣୀ ସ୍ତ୍ରୀ ଉପରେ ଚିଡ଼େ ; ଘର ତାକୁ ସୁଖ ଲାଗେ ନାହିଁ କି

ସଙ୍ଗୀ ମେଳରେ ଆମୋଦପ୍ରମୋଦ କରିବାରେ ସେ ସୁଖ ପାଏ ନାହିଁ। ଗୃହ ତାକୁ ବିଷାଦମୟ ଓ ଜୀବନ ତାକୁ ନୈରାଶ୍ୟକର ବୋଧ ହୁଏ। ବିଷଣ୍ଣ ଛାତ୍ର ସଙ୍ଗୀମାନଙ୍କ ବିରୁଦ୍ଧରେ ଶିକ୍ଷକଙ୍କ ନିକଟରେ ମିଥ୍ୟା କିମ୍ବା ନା କିମ୍ବା ଅଭିଯୋଗ କରେ; ତାକୁ ସଙ୍ଗୀତ, ଆମୋଦପ୍ରମୋଦ ବା ଖେଳ-କୌତୁକ ଭଲ ଲାଗେ ନାହିଁ। ପାଠ ପଢ଼ିବାବେଳେ ସେ ବହିଟାକୁ ଖାଲି ଚାହିଁ ରହିଥାଏ, ମାତ୍ର ବିଷଣ୍ଣତା ହେତୁ ତାହାର ଚିନ୍ତା ଅନ୍ୟତ୍ର ବ୍ୟସ୍ତ ଥାଏ। ବିଷଣ୍ଣ ଶିଶୁ ସର୍ବଦା କ୍ରନ୍ଦନ କରେ, ଭିନ୍ନ ଭିନ୍ନ ବ୍ୟକ୍ତିଙ୍କ କାଖକୁ ଯିବାକୁ ଚାହେଁ, ତଥାପି ତାହାର କ୍ରନ୍ଦନ ବନ୍ଦ ହୁଏ ନାହିଁ। ଜାଗ୍ରତ ହେବା ପୂର୍ବରୁ ବା ଶୋଇବାକୁ ଯିବା ପୂର୍ବରୁ କାନ୍ଦିବାଟା ବିଷଣ୍ଣ ଶିଶୁର ଗୋଟାଏ ପ୍ରକୃତି। ସୁସ୍ଥ ଶିଶୁ ନିଦରୁ ଉଠିବା ମାତ୍ରେ କାନ୍ଦେ ନାହିଁ କି ନିଦେଇଲେ ବି କାନ୍ଦେ ନାହିଁ।

ଉନ୍ମତ୍ତ ବ୍ୟକ୍ତିର ଆଚରଣ ଏକ ଲକ୍ଷଣ ଅଛି। ତାହାଠାରେ ଅତି ଭୟଙ୍କର କ୍ରୋଧ ବେଳେ ବେଳେ ଦେଖାଯାଏ। ମାତ୍ର ଏହି କ୍ରୋଧ କ୍ଷଣସ୍ଥାୟୀ। କ୍ରୋଧର ବିରାମ ପରେ ଉତ୍କଟ ପ୍ରଫୁଲ୍ଲତା ଦେଖାଦିଏ ଯାହା ପ୍ରତି ମୁହୂର୍ତ୍ତିକ ପୂର୍ବରୁ ସେ କ୍ରୁଦ୍ଧ ହୋଇଥିଲା, ଯାହାର ସର୍ବନାଶ କରିବ ବୋଲି ଗର୍ଜନ ତର୍ଜନ କରୁଥିଲା, ମୁହୂର୍ତ୍ତିକ ପରେ ତାହାପ୍ରତି ସେ ନମ୍ରଭାବ ପ୍ରକାଶ କରେ, ତାହାକୁ ମିଠା କଥା କହେ। କ୍ରୋଧର ବିରାମ ପରେ ଉତ୍କଟ ପ୍ରଫୁଲ୍ଲତା ପରିବର୍ତ୍ତେ ଉତ୍କଟ ନୈରାଶ୍ୟ, ଅନୁତାପ ଓ ବିଷଣ୍ଣତା ପ୍ରକାଶ ପାଏ। ମୁହୂର୍ତ୍ତିକ ପୂର୍ବରୁ ଯେ ଉନ୍ମତ୍ତତାଗ୍ରସ୍ତ ଥିଲା, ମୁହୂର୍ତ୍ତିକ ମଧ୍ୟରେ ସେ ଘୋର ବିଷାଦଗ୍ରସ୍ତ ହୋଇଯାଏ। ବିଷଣ୍ଣ ବ୍ୟକ୍ତିର ନୈରାଶ୍ୟ ଅନେକ ସମୟରେ କ୍ରନ୍ଦନ କରିବାଦ୍ୱାରା ବା ଅନ୍ୟଠାରୁ ସହାନୁଭୂତି ପାଇବା ଦ୍ୱାରା ଉପଶମିତ ହୁଏ। କାନ୍ଦିବା ପରେ ପରେ ବିଷଣ୍ଣ ବ୍ୟକ୍ତିଠାରେ ପ୍ରଫୁଲ୍ଲତା ଦେଖା ଦିଏ। ଉନ୍ମତ୍ତ

ବ୍ୟକ୍ତିଠାରେ ଆତ୍ମଗର୍ବ ଓ ଅହଙ୍କାର ବହୁଳଭାବେ ଦେଖାଯାଏ, ମାତ୍ର ଏହି ଅହଙ୍କାର ଓ ପ୍ରୀତି ଉତ୍ତେଜିତ ହେବା ପରେ ଘୋର ନୈରାଶ୍ୟ ଓ ଉଦ୍‌ବେଗର ଉଦୟ ହୁଏ ଏବଂ ଉନ୍ମତ୍ତ ବ୍ୟକ୍ତି ବିଷଣ୍ଣ ହୋଇଯାଏ ।

ଅଟ୍ଟହାସ୍ୟ କରିବାଟା ଉନ୍ମତ୍ତ ବ୍ୟକ୍ତିର ଅନ୍ୟ ଏକ ଲକ୍ଷଣ । ତାହାର ହାସ୍ୟ ଉଦ୍ଦାମ ; ହସି ହସି ସେ ଅଣନିଶ୍ୱାସୀ ହୋଇଯାଏ । କାର୍ଯ୍ୟ କରୁ କରୁ ଅପଣାଛାଏଁ ନୀରବରେ ସେ ହସୁଥାଏ ; କେହି ତାହାର ହାସ୍ୟର କାରଣ ବୁଝି ପାରେ ନାହିଁ । କଥା କହିବା ବେଳେ ସେ ଗମ୍ଭୀର ହୋଇ ପାରେ ନାହିଁ, ହସି ପକାଏ । ଗମ୍ଭୀର ବିଷୟ ବିଚାର କଲାବେଳେ ମଧ୍ୟ ସେ ହସେ । ମୃତ୍ୟୁ, ଶୋକ ଓ ଦୁଃଖର ଘଟଣାରେ ମଧ୍ୟ ତାକୁ ହସ ମାଡ଼େ । ତାହାକୁ କେହି ଗୁହିଁଲେ ସେ ନ ହସି ରହି ପାରେ ନାହିଁ । କ୍ରୋଧ ପରେ ପରେ ସେ ଉଚ୍ଚହାସ୍ୟ କରେ ; ଯାହାଠାରେ କ୍ରୁଦ୍ଧ ହୋଇଥାଏ, ମୁହୂର୍ତ୍ତିକ ପରେ ତାହା ସଙ୍ଗେ ମିଳି ସେ ପୁଣି ହସଖୁସ ହୁଏ । ବିକଟ ହାସ୍ୟ ହସି ବ୍ୟକ୍ତି-ବିଶେଷ ତାହାର ସ୍ତ୍ରୀକୁ ବା ଚାକରକୁ ବାଡ଼ାଏ ; ବିଦ୍ରୂପାତ୍ମକ ହାସ୍ୟ ହସି ଅଫିସର ତାହାର ତଳିଆ କିରାନିଠାରୁ କୈଫିୟତ୍ ତଲବ କରେ । ବିଷଣ୍ଣ ବ୍ୟକ୍ତି ଉତ୍କଟ ନୈରାଶ୍ୟ ବା ଦୁଃଖ ଯନ୍ତ୍ରଣା ହେତୁ ଉନ୍ମତ୍ତ ହୋଇ ହାସ୍ୟ କରେ । ବିଷଣ୍ଣତାଗ୍ରସ୍ତ ବ୍ୟକ୍ତିକୁ କେହି ତୀବ୍ର ଭର୍ତ୍ସନା କଲେ ସେ ତାହାର ପ୍ରତ୍ୟୁତ୍ତର ନ ଦେଇ କେବଳ ହସିଦିଏ । ବିଷଣ୍ଣ ବ୍ୟକ୍ତିର ବିକୃତ ଗାମ୍ଭୀର୍ଯ୍ୟ ସଙ୍ଗେ ସଙ୍ଗେ ତାହାର ଓଷ୍ଠାଧରରେ ଈଷତ୍ ହାସ୍ୟରେଖା ଦେଖାଯାଏ ।

ବିଷଣ୍ଣ ବ୍ୟକ୍ତିର ରୋଗ ହେଲେ ସେ ମୃତ୍ୟୁ ନିଶ୍ଚିତ ଭାବି ଡାକ୍ତର ଫେରାଇ ଦିଏ ଓ ଔଷଧ ଖାଏ ନାହିଁ ; କେବେ ମରିବ

ସେ ତାହା କହିଦିଏ । ମୃତ୍ୟୁ ନାମରେ ସେ ମନ ଭିତରେ ଆତଙ୍କିତ ହେଉଥାଏ ; ଅଥଚ ତାହାର ମୃତ୍ୟୁରେ କେହି ଦୁଃଖ ନ କରିବାକୁ ଅନ୍ୟମାନଙ୍କୁ ଉପଦେଶ ଦିଏ । ଘୋର ଉଦ୍‌ବେଗରେ ନିଜର ନାଡ଼ୀ ଦେଖି ଦେଖି କହି ପକାଏ ତାହାର ନାଡ଼ୀ ଆଉ ମିଳୁ ନାହିଁ ; ପାଦ ସ୍ପର୍ଶ କରି କହେ ଯେ ତାହା ବରଫ ପରି ଥଣ୍ଡା ହୋଇ ଆସିଲାଣି ; ଏହି ଉକ୍ତିରେ ସେ ପରିବାରର ସମସ୍ତଙ୍କୁ ଘୋର ଉଦ୍‌ବିଗ୍ନ କରି ପକାଇ କିଛି ଚିନ୍ତା ନ କରିବାକୁ ସେମାନଙ୍କୁ ସାନ୍ତ୍ୱନା ଦିଏ ଏବଂ ଉନ୍ମତ୍ତ ଭାବରେ ଭଗବାନଙ୍କୁ ଡାକେ ।

ବିଷଣ୍ଣ ବ୍ୟକ୍ତିଠାରେ ଯେଉଁ ଘୋର ଉଦ୍‌ବେଗ ଦେଖାଯାଏ, ସେହି ଉଦ୍‌ବେଗ ହେତୁରୁ ସେ ସର୍ବଦା ନିଜକୁ କାର୍ଯ୍ୟବ୍ୟସ୍ତ ରଖେ । ଉନ୍ମତ୍ତ ବ୍ୟକ୍ତି ମଧ୍ୟ ସର୍ବଦା କୌଣସି ନା କୌଣସି କାର୍ଯ୍ୟରେ ବ୍ୟସ୍ତ ଥାଏ ; ମାତ୍ର ତାହାର କାର୍ଯ୍ୟବ୍ୟସ୍ତତା ଉନ୍ମତ୍ତତା ହେତୁ ଘଟିଥାଏ । ଉନ୍ମତ୍ତ ବ୍ୟକ୍ତି ନିଜର କାର୍ଯ୍ୟକୁ ପର୍ବତତୁଲ୍ୟ ପ୍ରକାଣ୍ଡ ମନେ କରେ, ମାତ୍ର ଏହି କାର୍ଯ୍ୟକୁ ସମ୍ପନ୍ନ କରିବାପାଇଁ ତାହାର ସମୟ ଖୁବ୍ କମ୍ ମନେ କରେ, ଏଣୁ ଶୀଘ୍ର ଶୀଘ୍ର ତରତର ହୋଇ ସେ କାର୍ଯ୍ୟ କରି ଯାଏ । ବିଷଣ୍ଣ ବ୍ୟକ୍ତି ତାହାର ଉଦ୍‌ବେଗଠାରୁ ଅବ୍ୟାହତି ପାଇବା ଇଚ୍ଛାରେ ନିଜକୁ ସର୍ବଦା କାର୍ଯ୍ୟବ୍ୟସ୍ତ ରଖେ । ବିଷାଦଗ୍ରସ୍ତ ଛାତ୍ର ପରୀକ୍ଷା ହଲକୁ ଯିବା ପୂର୍ବରୁ ଘୋର ଉଦ୍‌ବେଗ ପ୍ରକାଶ କରେ, ସେ ଘନ ଘନ ପରିସ୍ରା କରି ଯାଏ ; ତାହାର ଉଦରାମୟ ହୁଏ । ବିଷଣ୍ଣ ବ୍ୟକ୍ତି ଯାତ୍ରା କରିବା ପୂର୍ବରୁ ବା ଟ୍ରେନ୍ ଧରିବା ଆଗରୁ ଉଦ୍‌ବିଗ୍ନ ହୋଇପଡ଼େ; କୌଣସି କାର୍ଯ୍ୟ କରିବାକୁ ଯିବା ପୂର୍ବରୁ, କାହାରି ସଙ୍ଗେ ଦେଖା କରିବା ପୂର୍ବରୁ ବା ରାସ୍ତାରେ କାହାରି ସହିତ ଭେଟ ହେଲେ ବିଷାଦଗ୍ରସ୍ତ ବ୍ୟକ୍ତିର ଉଦ୍‌ବେଗ ବଢ଼େ ।

ଦିବସର ନିର୍ଦ୍ଦିଷ୍ଟ ସମୟ, ନିର୍ଦ୍ଦିଷ୍ଟ ଋତୁ, ନିର୍ଦ୍ଦିଷ୍ଟ ବୟସ ଓ ଅବସ୍ଥାରେ ପ୍ରମତ୍ତଭାବ ଏବଂ ବିଷଣ୍ଣତା ଦେଖା ଦେଇ ପାରେ । କେହି କେହି ଶଯ୍ୟାତ୍ୟାଗ ପରେ ବା ପ୍ରାତଃକାଳରେ ବିଷଣ୍ଣ ଦେଖାଯାନ୍ତି । ପୁଣି କେହି କେହି ରାତିରେ ଖୁବ୍ ବିଷାଦଗ୍ରସ୍ତ ଦେଖାଯାନ୍ତି, ମାତ୍ର ପ୍ରାତଃକାଳରେ ଶଯ୍ୟାତ୍ୟାଗ କଲା ପରେ ଏହି ବିଷଣ୍ଣତା ଦୂର ହୋଇଯାଏ ଏବଂ ତତ୍‌ପରିବର୍ତ୍ତେ ଉଲ୍ଲାସଭାବ ଦେଖାଯାଏ । କେହି କେହି ଦିନଯାକ ପରିଶ୍ରମ କରି ଘରକୁ ଆସିଲେ ବିଷଣ୍ଣ ହୁଅନ୍ତି । ବର୍ଷା ଋତୁରେ କେତେକଙ୍କଠାରେ ବିଷଣ୍ଣତା ଦେଖାଯାଏ । ବସନ୍ତ ଋତୁରେ ଏହି ବିଷଣ୍ଣତା ଉଲ୍ଲାସତାରେ ପରିଣତ ହୁଏ । ଯୌବନରେ କେତେକଙ୍କ ଠାରେ ଘୋର ବିଷାଦ ଲକ୍ଷିତ ହୁଏ, ମାତ୍ର ବାର୍ଦ୍ଧକ୍ୟରେ ଏହି ବିଷାଦ ଦୂର ହୋଇଯାଏ ଏବଂ ଉନ୍ମାଦ ଭାବର ପ୍ରକାଶ ଘଟେ । ଗର୍ଭାବସ୍ଥାରେ କୌଣସି କୌଣସି ସ୍ତ୍ରୀ ଖୁବ୍ ବିଷଣ୍ଣ ହୁଅନ୍ତି ଏବଂ କେହି କେହି ଉନ୍ମାଦଗ୍ରସ୍ତା ହୁଅନ୍ତି ।

ସମୁଦ୍ରର ଜୁଆର ଆଉ ଭଟ୍ଟା ପରି ଉନ୍ମାଦ ଓ ବିଷାଦ ମନର ଯୋଡ଼ିଏ ଅବସ୍ଥା ବା ମେଜାଜ (Temperaments) । ମାନସିକ ଦ୍ୱନ୍ଦ୍ୱର ବିଦ୍ୟମାନତା ହେତୁରୁ ଏହି ମାନସିକ ଅବସ୍ଥା ଯୋଡ଼ିକର ଘନ ଘନ ଅଦଳ ବଦଳ ହେଉଥାଏ, ଠିକ୍ ଯେପରି ସମୁଦ୍ରର ଜୁଆରଭଟ୍ଟାର ଘନ ଘନ ପରିବର୍ତ୍ତନ ହୁଏ । ମାନସିକ ଦ୍ୱନ୍ଦ୍ୱର ତୀବ୍ରତା ଯେଉଁ ବ୍ୟକ୍ତି ଯେତିକି ବେଶୀ ବୋଧ କରେ, ତାହାର ଏହି ମେଜାଜ ଯୋଡ଼ିକ ସେତିକି ପ୍ରବଳ ହୁଏ । ପକ୍ଷାନ୍ତରେ ମନର ଅନ୍ୟ ଏକ ମୌଳିକ ଅବସ୍ଥା ବା ମେଜାଜ ଅଛି, ତାହା ହେଉଛି ଅନାସକ୍ତ ମନୋବୃତ୍ତି (Detached mood) । ମାନସିକ ଦ୍ୱନ୍ଦ୍ୱର ଜୁଆର ଭଟ୍ଟାରେ ହାବୁଡ଼ୁବୁ ନ ଖାଇ ସ୍ଥିର ଓ ଅଟଳ ରହିବାକୁ ଅନାସକ୍ତ

ଅବସ୍ଥା କୁହାଯାଏ । ଶୀତବୋଧ ଏବଂ ଗ୍ରୀଷ୍ମବୋଧ ଯୋଡ଼ିଏ ଦ୍ୱନ୍ଦ୍ୱ ; ଶୀତବୋଧ ହେଲେ ମଣିଷ ଦେହକୁ ବସ୍ତ୍ରାଚ୍ଛାଦିତ କରେ ; ଗ୍ରୀଷ୍ମବୋଧ ହେଲେ ମଣିଷ ଦେହକୁ ଅନାଚ୍ଛାଦିତ କରେ, ମାତ୍ର ଯେଉଁ ବ୍ୟକ୍ତିର ଶୀତବୋଧ ଓ ଗ୍ରୀଷ୍ମବୋଧ ନ ଥାଏ ସେ ଶୀତରେ ଦେହକୁ ଅନାଚ୍ଛାଦିତ କରି ମଧ୍ୟ ଶୀତବୋଧ କରେ ନାହିଁ କିମ୍ବା ଗ୍ରୀଷ୍ମରେ ଦେହକୁ ଆଚ୍ଛାଦିତ କରି ମଧ୍ୟ ଗ୍ରୀଷ୍ମବୋଧ କରେ ନାହିଁ । ପ୍ରବଳ ଶୀତରେ ଗୋଟାଏ ଗୋରୁଜଗୁଆଳ ଅନାଚ୍ଛାଦିତ ଦେହରେ ଆନନ୍ଦରେ ବଂଶୀ ବଜାଇ ଗାଈ ଚରାଉଛି ; ଉକ୍ତ ବ୍ୟକ୍ତିର ଶୀତ-ବୋଧ ନାହିଁ, ଗୋଟିଏ କୃଷକ ପ୍ରଖର ରୌଦ୍ରରେ ହଳ କରୁଛି, ଉକ୍ତ ବ୍ୟକ୍ତିର ତୀବ୍ର ଗ୍ରୀଷ୍ମବୋଧ ନାହିଁ । ଠିକ୍ ସେହିପରି ସୁଖ ଦୁଃଖ ହର୍ଷବିଷାଦାଦି ମାନସିକ ଦ୍ୱନ୍ଦ୍ୱର କବଳରେ ନ ପଡ଼ିଲେ ବ୍ୟକ୍ତିବିଶେଷ ପ୍ରମତ୍ତତା ଏବଂ ବିଷଣ୍ଣତାର କୁଆରଭଟ୍ଟାରେ ହାବୁଡୁବୁ ଖାଏ ନାହିଁ । କଥାରେ କହନ୍ତି, "ସମ୍ପଦରେ ନୋହିବୁ ଗୃତର, ବିପଦରେ ନ ହେବୁ କାତର" । ଉନ୍ମାଦ-ବିଷାଦ-ଦ୍ୱନ୍ଦ୍ୱ-ଜନିତ ବିକୃତିଗ୍ରସ୍ତ ଲୋକ ବିପଦ ପଡ଼ିଲେ ସହଜରେ କାତର ହୋଇ ପଡ଼େ । ମାତ୍ର ସମ୍ପଦରେ ବିଚଳିତ ହେବା ବା ବିପଦରେ ଅଧୀର ନ ହେବା କେବଳ ଅନାସକ୍ତ ବ୍ୟକ୍ତିଠାରେ ଲକ୍ଷିତ ହୁଏ । ଅନାସକ୍ତ ବ୍ୟକ୍ତିଙ୍କ ସଂଖ୍ୟା ଜଗତରେ ଖୁବ୍ ବିରଳ । ପୁନଃପୁନଃ ଅଭ୍ୟାସ ଇଚ୍ଛାମାନଙ୍କର ସଂଯମ ସୁଦୃଢ଼ ବିବେକ ଏବଂ ନିଷ୍କାମ ଭାବରେ କାର୍ଯ୍ୟ କରିବା ଦ୍ୱାରାହିଁ ଅନାସକ୍ତ ମନୋବୃତ୍ତିର ବିକାଶ ଘଟେ । ଇଚ୍ଛା ବା ପ୍ରବୃତ୍ତିମାନଙ୍କୁ ସଂଯତ କରିବା ପରିବର୍ତ୍ତେ କେବଳ ଯଦି ଅବରୋଧ ଓ ଅତୃପ୍ତ କରାଯାଏ, ଏହି ଅତୃପ୍ତ ଓ ଅବରୁଦ୍ଧ ଇଚ୍ଛା-ମାନଙ୍କର ବିଦ୍ୟମାନତା ହେତୁ କ୍ରୋଧ ବା ଭୟର ଉଦ୍ରେକ ହୁଏ । କ୍ରୋଧ ବା ଭୟ ହେତୁ ମନର ଏକପ୍ରକାର ସମ୍ମୋହ ବା ଅର୍ଦ୍ଧ-

ଚେତନାବସ୍ଥା ଘଟେ । ଅର୍ଦ୍ଧଚେତନାବସ୍ଥା ହେତୁ ମନର ସ୍ମୃତି-ସ୍ତରରେ ଘୋର ବିପର୍ଯ୍ୟୟ ଘଟେ । ବିପର୍ଯ୍ୟସ୍ତ ସ୍ମୃତି ହେତୁ ମନୁଷ୍ୟ କାର୍ଯ୍ୟ କାରଣ ସମ୍ବନ୍ଧ ଭୁଲିଯାଏ । କାର୍ଯ୍ୟ କାରଣ ସମ୍ବନ୍ଧରେ ଭ୍ରମ ହେତୁ ମନୁଷ୍ୟର ବୁଦ୍ଧି ଲୋପ ହୁଏ ଅର୍ଥାତ୍ ଜୀବନର ପ୍ରତି କ୍ଷେତ୍ରରେ ଖାପ ଖୁଆଇ ଚଳି ପାରିବାର ପ୍ରତ୍ୟେକ ଜୀବର ଯେ ସ୍ୱାଭାବିକ ଶକ୍ତି (**Adaptibility**)ଅଛି, ମଣିଷର ବିପର୍ଯ୍ୟସ୍ତ ସ୍ମୃତି (**Forgetfulness**) ହେତୁ ଏହି ଶକ୍ତି ଲୋପ ହୁଏ । ଏହି ଶକ୍ତି ବା ବୁଦ୍ଧି ଲୋପ ହେଲେହିଁ ମାନବର ଯାବତୀୟ ବିକୃତି ବା ଯନ୍ତ୍ରଣା (ଶାରୀରିକ ଓ ମାନସିକ) ଉପସ୍ଥିତ ହୁଏ ।

ଉନ୍ମାଦ ଏବଂ ବିଷାଦ ଏହି ବିକୃତିଦ୍ୱୟ ବିପର୍ଯ୍ୟସ୍ତ ସ୍ମୃତି ହେତୁରୁ ଘଟେ । ବିପର୍ଯ୍ୟସ୍ତ ସ୍ମୃତି ନିଜେ ମଧ୍ୟ ଗୋଟିଏ ମାନସିକ ବିକୃତି । ମଣିଷ ବେଳେ ବେଳେ ଖୁବ୍ ବିଷଣ୍ଣ ବା ଖୁବ୍ ଉନ୍ମତ୍ତ ହୋଇପଡ଼େ ଅଥଚ ଏହି ବିଷଣ୍ଣତା ଓ ଉନ୍ମତ୍ତତାର କାରଣ ସେ ଖୋଜି ପାଏ ନାହିଁ । ତାହାର ସଙ୍ଗୀମାନେ ମଧ୍ୟ ତାହାର ବିଷାଦ ବା ଉନ୍ମାଦର କାରଣ ଦେଖି ପାରନ୍ତି ନାହିଁ । ମାତ୍ର ଏହି ବିଷାଦ ବା ଉନ୍ମାଦର କାରଣ ମଣିଷର ଅନ୍ତଃକରଣରେ ରହିଥିବା କୌଣସି ଅତୃପ୍ତ ଦୀର୍ଘ ବିସ୍ମୃତ ଓ ଅବରୁଦ୍ଧ କୌଣସି ବାସନା । ଏହି ଅତୃପ୍ତ ବାସନା ନିଜର ତୃପ୍ତି-ସାଧନ ପାଇଁ ମଣିଷକୁ ପରପୀଡ଼କ (**Saddist**) ବା ଆତ୍ମପୀଡ଼କ କରାଏ ; ମାତ୍ର ମଣିଷକୁ ପରପୀଡ଼କ ବା ଆତ୍ମପୀଡ଼କ କରାଇବା ଦ୍ୱାରା ନିଜର ତୃପ୍ତି ଘଟାଇ ନ ପାରି ତାହାକୁ ଦ୍ୱିରୂପୀ ବିକୃତିଗ୍ରସ୍ତ କରାଏ ଅର୍ଥାତ୍ ତାହାକୁ ଯୋଡ଼ାଏ ରୂପ ଧରିବାକୁ ବାଧ୍ୟ କରେ । ତଥାପି ଅତୃପ୍ତ ଇଚ୍ଛାର ତୃପ୍ତି ଘଟି ପାରେ ନାହିଁ; ଏଣୁ ସ୍ମୃତିସ୍ତରରେ ବିପର୍ଯ୍ୟୟ ଘଟାଇ ମଣିଷକୁ ଯଣସ୍ଥାୟୀ ଉଲଟ ଉନ୍ମାଦ ବିଷାଦର କୁଅର

ଭଙ୍ଗାରେ ବୃନ୍ଦାଏ ଉଠାଏ । ଅତୃପ୍ତ ଇଚ୍ଛା ସ୍ଥୂଳ ବାସ୍ତବ ତୃପ୍ତି ଲାଭ କରିବାକୁ ଅକ୍ଷମ ହୋଇ ସ୍ୱପ୍ନରେ କଳ୍ପନା ଜଳ୍ପନାର ଆକାରରେ ଅବାସ୍ତବ ତୃପ୍ତି ଲାଭ କରେ, ଏହାହିଁ ମଣିଷର ମନରେ ସାମୟିକ ଉନ୍ମାଦନା ଆଣେ । ମାତ୍ର ଅତୃପ୍ତ ଇଚ୍ଛାଟି ଅବାସ୍ତବ ତୃପ୍ତିରେ ବେଶୀ କ୍ଷଣ ସନ୍ତୁଷ୍ଟ ରହେ ନାହିଁ; ଏଣୁ ସାମୟିକ ଉନ୍ମାଦନା ଉତ୍କଟ ବିଷାଦରେ ପରିଣତ ହୁଏ । ଅତୃପ୍ତ ବାସନାମାନ ମଣିଷମନର ଗୋପନ ପ୍ରକୋଷ୍ଠରେ ଥିବାରୁ ସାମୟିକ ପ୍ରବଳ ଉନ୍ମାଦନା ଓ ଉତ୍କଟ ବିଷାଦର କାରଣ ତାହାକୁ ମାଲୁମ ହୋଇ ପାରେ ନାହିଁ ।

---

# ପଞ୍ଚମ ପରିଚ୍ଛେଦ

## ଜିଦ୍ଦି ଆଉ ପାଗଳାମି

( Obsessions, Eccentricity and Obstinacy )

ପାଗଳ କହିଲେ ସାଧାରଣ ବ୍ୟକ୍ତି ଏହାକୁ ଯୋଡ଼ିଏ ଅର୍ଥରେ ନିଅନ୍ତି । ଗୋଟିଏ ହେଉଛି ବଦ୍ଧପାଗଳ ଅର୍ଥାତ୍ ଯାହାର ବିବେକ ବା ଚୈତନ୍ୟର ସମ୍ପୂର୍ଣ୍ଣ ବିଲୋପ ଘଟିଛି । ଉକ୍ତ ବ୍ୟକ୍ତିର ମନ ନିମ୍ନସ୍ତରକୁ ଖସି ଯାଇଅଛି ଏବଂ ଉକ୍ତ ବ୍ୟକ୍ତି ଅତୀତ ବୟସର ଆଚରଣମାନଙ୍କୁ ବାରମ୍ବାର ପ୍ରକାଶ କରୁଅଛି । କୌଣସି ପ୍ରବଳ କାମନାର ସହସା ଅବରୋଧ ଘଟିଲେ ବ୍ୟକ୍ତିବିଶେଷ ତାତ୍କାଳିକ କୌଣସି ଆଚରଣ ବନ୍ଧରେ ଲାଖିଯାଇ ବଦ୍ଧପାଗଳ ହୋଇଯାଇ ପାରେ । ନିମ୍ନସ୍ତରକୁ ଖସିଯିବା (Regression) ଓ ତାତ୍କାଳିକ କୌଣସି ଆଚରଣବନ୍ଧରେ ଲାଖିଯିବା (Fixation) ଏ ଯୋଡ଼ିକଯାକ ବଦ୍ଧପାଗଳ ହୋଇଯିବାର କାରଣ । ଦୃଷ୍ଟାନ୍ତସ୍ୱରୂପ ମନେ କର, "କୌଣସି ପ୍ରୌଢ଼ା ସ୍ତ୍ରୀଲୋକ ଉଲଗ୍ନ ହୋଇ ରାସ୍ତାରେ ବୁଲୁଛି, ତାହାର ହାତରେ ଖଣ୍ଡେ ଭଙ୍ଗା ଛେଲିଆ, କେତେଗୁଡ଼ିଏ କାଠି, ବାଲିଗରଡ଼ା ଓ ଶବ କାଗଜ ।" ଏହି ସ୍ତ୍ରୀଲୋକଟି ବଦ୍ଧପାଗଳ, ଏହାର ବିବେକ ବା ପ୍ରଧାନ ବ୍ୟକ୍ତିତ୍ୱର ସମ୍ପୂର୍ଣ୍ଣ ଲୋପ ହୋଇଅଛି ; ଏହାଠାରେ ସ୍ତ୍ରୀ ପୁରୁଷର ଭେଦଜ୍ଞାନ ଆଦୌ ନାହିଁ, ଏହି ସ୍ତ୍ରୀଲୋକଟିର ମନ ଶିଶୁର ସ୍ତରକୁ ଖସିଯାଇଛି । ପକ୍ଷାନ୍ତରେ "ଅପର ଏକ ସ୍ତ୍ରୀଲୋକ ତାହାର ପ୍ରିୟ ସନ୍ତାନକୁ ରୋଗଶଯ୍ୟାରେ ମରିଯାଉଥିବାର ଦେଖି ଶୋକରେ ଅଧୀର ହୋଇ ବିଳାପ କରିବାକୁ ଲାଗିଲା ଏବଂ କି ଦିନ, କି ରାତି ଏହି ବିଳାପର ଅବସାନ ହେଲା ନାହିଁ । ବର୍ଷ ବର୍ଷ ଅତୀତ ହୋଇଗଲା, ତଥାପି ସ୍ତ୍ରୀଟିର ବିଳାପ

ବନ୍ଦ ହେଉ ନାହିଁ ।” ଉକ୍ତ ସ୍ତ୍ରୀର ବିବେକର ଲୋପ ଘଟିଛି ଏବଂ ସ୍ମୃତି ବିଲୁପ୍ତ ହୋଇଯାଇଛି, ତାହାର ଖାଇବା ପିଇବାରେ କୌଣସି ନିୟମ ନାହିଁ । ସେ ପରିବାରର କାହାରିକୁ ଚିହ୍ନି ପାରୁ ନାହିଁ, କାହାରିକୁ କଥା କହୁ ନାହିଁ, କେବଳ ମଝି ମଝିରେ ବାହୁନୁଛି । ଏହି ସ୍ତ୍ରୀଲୋକଟି ତାତ୍କାଳିକ ଆଚରଣବିହୀନରେ ଲକ୍ଷିଯାଉଅଛି ।

ପାଗଳର ଅନ୍ୟ ଅର୍ଥ ଏହାହିଁ ଯେ ବ୍ୟକ୍ତିବିଶେଷର କୌଣସି ଆଚରଣ ଯଦି ଅସାଧାରଣ ଓ ଅନାବୃତ ହୁଏ, ତେବେ ଉକ୍ତ ବ୍ୟକ୍ତିକୁ ପାଗଳ ବା ଅର୍ଦ୍ଧପାଗଳ କୁହାଯାଏ ଏବଂ ତାହାର ଅସାଧାରଣ ଅନାବୃତ ଆଚରଣକୁ ପାଗଳାମି (Obsession) କୁହାଯାଏ । ବଦ୍ଧପାଗଳ ଓ ଉକ୍ତ ପ୍ରକାର ପାଗଳ ମଧ୍ୟରେ ପ୍ରଭେଦ ଏହାହିଁ ଯେ, ବଦ୍ଧପାଗଳ ପୂର୍ବପରିଚିତ ବ୍ୟକ୍ତିକୁ ଚିହ୍ନି ପାରେ ନାହିଁ, ପୂର୍ବର କଥାଭଙ୍ଗୀ ଭୁଲିଯାଏ; ତାହାର ପ୍ରତ୍ୟେକ କ୍ରିୟା ଯନ୍ତ୍ରଚାଳିତ-ବତ୍ ହୋଇଯାଏ । ମାତ୍ର ଅର୍ଦ୍ଧପାଗଳ ବା ଅଡ଼ବାଯ୍ୟା ସଙ୍ଗୀମେଳରେ ଖାଏ, ପିଏ, ପୂର୍ବପର କଥାବାର୍ତ୍ତା କରେ, ତାହାର ଜ୍ଞାନ ବା ଚୈତନ୍ୟରେ କୌଣସି ନୂଆ ବିପର୍ଯ୍ୟୟ ଦେଖାଯାଏ ନାହିଁ, ଅଥଚ ତାହାର କେତେଗୁଡ଼ିଏ ଆଚରଣ ଏପରି ଅସ୍ୱାଭାବିକ ଓ ବିକୃତ ଯେ ତାହାକୁ ଅଡ଼ବାଯ୍ୟା ନ କହି ରହି ହୁଏ ନାହିଁ । ମନସ୍ତତ୍ତ୍ୱଜ୍ଞଙ୍କ ମତରେ ଅଧିକାଂଶ ବ୍ୟକ୍ତିଙ୍କଠାରେ କୌଣସି ନା କୌଣସି ରକମ ପାଗଳାମି ଦେଖାଯାଏ ।

ଶୃଙ୍ଗାରକ୍ରିୟା ଗୋଟିଏ ସ୍ୱାଭାବିକ ଆଚରଣ । ମାତ୍ର ପୁରୁଷ ବା ସ୍ତ୍ରୀଠାରେ ହଠାତ୍ ଏହି କ୍ରିୟାପ୍ରତି ଘୃଣାର ଉଦୟ ହେଲେ ଏହି ଘୃଣାକୁ ପାଗଳାମି କୁହାଯାଏ । ସ୍ତ୍ରୀ ପୂର୍ବରୁ ବେଶ୍ ରତିନିପୁଣା ଥିଲା, ମାତ୍ର ଗୋଟିଏ ଶିଶୁସନ୍ତାନର ପ୍ରସବ ପରେ ହଠାତ୍ ଏହି ରମଣକ୍ରିୟା

ପ୍ରତି ଘୋର ବିଦ୍ଵେଷ ଦେଖାଦେଲା । ପୁରୁଷ ବେଶ ସଙ୍ଗମପିପାସୁ ଥାଏ, ମାତ୍ର ଦିନେ ହଠାତ୍ ତାହାର ଏହି କାର୍ଯ୍ୟ ପ୍ରତି ଘୃଣା ଦେଖାଦିଏ । ସେ ସ୍ତ୍ରୀଠାରୁ ଦୂରରେ ଗୋଟିଏ ପ୍ରକୋଷ୍ଠରେ ଏକାକୀ ଶୟନ କରେ; ସଂକ୍ରାନ୍ତି, ଅମାବାସ୍ୟା, ପୂର୍ଣ୍ଣିମା, ଏକାଦଶୀ ବା ଅନ୍ୟାନ୍ୟ ପର୍ବଦିନ-ମାନଙ୍କରେ ସ୍ତ୍ରୀସଂସର୍ଗରୁ ବିରତ ହୁଏ ; ବ୍ରହ୍ମଚର୍ଯ୍ୟର ମହତ୍ତ୍ୱ ଅନ୍ୟ-ମାନଙ୍କୁ କହେ ; ନିଜର ପୁତ୍ରକନ୍ୟାମାନଙ୍କର ଆଚରଣକୁ ତୀବ୍ରଭାବରେ ଲକ୍ଷ୍ୟ କରେ । ସେ ସ୍ୱପ୍ନରେ ବୀର୍ଯ୍ୟପାତ ଭୟରେ ପିଆଜ ରସୁଣ ପ୍ରଭୃତି ଉତ୍ତେଜକ ଦ୍ରବ୍ୟ ଭୋଜନରୁ ବିରତ ହୁଏ ; ଭୋଜନ ଶୟନାଦି ସମ୍ବନ୍ଧରେ ନାନାବିଧ ସଂଯମ ଅବଲମ୍ବନ କରେ ; ଏହି ପ୍ରକାର ଆଚରଣ ଫଳରେ ସେ ସମସ୍ତଙ୍କ ଉପରେ ବିରକ୍ତ ହୁଏ । ସଙ୍ଗମ ଅଭାବରୁ ତାହାର ସ୍ତ୍ରୀ ଲମ୍ପଟୀ ବା ହିଷ୍ଟିରିଆ ରୋଗଗ୍ରସ୍ତ ହୁଏ ଏବଂ ତାହାର ନିଜର ଧ୍ୱଜଭଙ୍ଗ ଓ ଶୁକ୍ରତାରଲ୍ୟାଦି ରୋଗ ଦେଖାଯାଏ ।

ପ୍ରତ୍ୟେକ ବିଷୟକୁ ଅନ୍ୟାୟ ମନେ କରିବା ଅନ୍ୟ ଏକପ୍ରକାର ପାଗଳାମି । ଏହି ପ୍ରକାର ପାଗଳାମି ଥିବା ଆଡ଼ବାୟୁ ମନେ କରେ ଯେ ସଂସାରରେ ପାପର ମାତ୍ରା ଦିନକୁ ଦିନ ବଢ଼ି ଯାଉଛି ; ଏହି କାରଣରୁ ଲୋକେ ଅଳ୍ପାୟୁ ହୋଇ ଯାଉଛନ୍ତି ବୋଲି ସେ ମନେ କରେ । ସେ ନିଜକୁ ଓ ନିଜର କାର୍ଯ୍ୟକୁ ବେଶ୍ ପସନ୍ଦ କରେ । ତାହାର ଧାରଣାରେ ଅନ୍ୟ ସମସ୍ତେ ଖରାପ, ସେ ନିଜେ କେବଳ ଭଲ; ଅନ୍ୟ ସମସ୍ତେ ଅସାଧୁ, ସେ ନିଜେ କେବଳ ସଚ୍ଚୋଟ । ଅନ୍ୟମାନଙ୍କର ଭୋଜନରୀତିକୁ ନାପସନ୍ଦ କରି ସେ କହେ ଯେ ଲୋକେ ମୋଟା ଖାଇବା ଓ ମୋଟା ପିନ୍ଧିବା ଉଚିତ; ମସଲା ନ ଦେଇ ସିଝା ତରକାରି ଖାଇବା ଉଚିତ । ସେ ସିଝା ତରକାରି କିଛିଦିନ ଖାଇବା ଅଭ୍ୟାସ କରେ ; ପାନ ବି଼ଡ଼ି ଅଭ୍ୟାସ କିଛିଦିନ ଛାଡ଼ିଦିଏ । ମାତ୍ର ତାହାର ଏହି ଅଭ୍ୟାସକୁ ରୋକିଥାଏ ସାମୟିକ ଓ କ୍ଷଣିକ ଉତ୍ତେଜନା ଘଟୁଥିବାରୁ

ବେଶୀଦିନ ସ୍ଥାୟୀ ହୋଇ ପାରେ ନାହିଁ । ସେ ନବ୍ୟଶିକ୍ଷିତମାନଙ୍କୁ ନିନ୍ଦା କରି କହେ ଯେ ସେମାନେ ଦୈହିକ ପରିଶ୍ରମ କରିବା ଉଚିତ ଏବଂ ନିଜେ ମଧ୍ୟ କୋଡ଼ି ଧରି ବଗିଚାରେ କିଛିଦିନ କାର୍ଯ୍ୟ କରେ; ଟ୍ରେନକୁ ଚଢ଼ିବା ବେଳେ ତାହାର ନିଜ ବୋଝକୁ ନିଜେ ମୁଣ୍ଡାଇ ନିଏ । ମାତ୍ର ତାହାର ଏହି କାର୍ଯ୍ୟ ବେଶୀ ଦିନ ସ୍ଥାୟୀ ହୁଏ ନାହିଁ ।

ବିକୃତ ଧରଣର ଈଶ୍ୱରଭକ୍ତି ଅନ୍ୟ ଏକପ୍ରକାର ପାଗଳାମି । ଏହି ପାଗଳାମି ଥିଲେ ମଣିଷ ଦିନରାତି କୋଥଳି ଭିତରେ ହାତ ପୂରାଇ ମାଳା ଜପେ ; ସେ ଅନ୍ୟ ସଙ୍ଗରେ ସାଂସାରିକ ବିଷୟ ଆଶୟ ନେଇ କଥାବାର୍ତ୍ତା କରେ, ଅଥଚ ତାହାର ମାଳାଜପ ଚାଲିଥାଏ ; ମଝିରେ ମଝିରେ 'ହରି ହରି ବା ରାମ ରାମ' ଶବ୍ଦ ମୁଖରୁ ବାହାରୁଥାଏ । ସେ ନିଜର ସ୍ତ୍ରୀ ବା ଗୃହର ଚାକରଙ୍କୁ ଅଶ୍ଳୀଳ ଭାଷାରେ ଗାଳି ଦେଇ ଦେଇ ମାଳା ଜପୁଥାଏ । ମହାଜନ ତାହାର ଖାତକକୁ ଝଡ଼ାଏ ସୁଧ ଛାଡ଼ିଦେବ ନାହିଁ ବୋଲି କହିଲାବେଳେ ରୁଦ୍ରାକ୍ଷ ମାଳାକୁ ଖୁବ୍ ଜୋରରେ ଗଡ଼ାଏ । ଦିନ ଅପେକ୍ଷା ରାତିରେ ଏହି ବିକୃତ ଈଶ୍ୱରଭକ୍ତ ବେଶୀ ତେଜ ଉଠେ ; ସେ ଅର୍ଦ୍ଧରାତ୍ରରେ ବିଛଣାରୁ ଉଠି ମଶାରି ଭିତରେ ପଦ୍ମାସନରେ ବସି ପ୍ରାର୍ଥନା କରେ ଓ ପୁଣି ଶୋଇ ପଡ଼େ । ରାତି ତିନିଟାରୁ ଉଠି ସେ ପ୍ରାର୍ଥନା କରି ବସେ, ମାତ୍ର ପ୍ରାର୍ଥନା କରୁ କରୁ ତାହାର ମନ ନାନାପ୍ରକାର ଚିନ୍ତା ଓ କଳ୍ପନା ଜଳ୍ପନାରେ ଜଡ଼ୀଭୂତ ହୋଇପଡ଼େ । ସକାଳଯାଏ ଏହିପରି ପ୍ରାର୍ଥନା କଲାପରେ ସେ ଅନ୍ୟାନ୍ୟ ନିତ୍ୟନୈମିତ୍ତିକ କାର୍ଯ୍ୟରେ ଯୋଗ ଦିଏ । ଏହିପରି ବ୍ୟକ୍ତି ପ୍ରାୟଶଃ ଶଠ, ଖଳ, କୃପଣ କ୍ରୋଧାନ୍ଧ ଓ ଧର୍ମାନ୍ଧ ; ପ୍ରକୃତ ଈଶ୍ୱରଭକ୍ତି ଲୋକକୁ ସାଧୁ, ସଚ୍ଚରିତ୍ର ଉଦାର, ଧାର୍ମିକ ଓ ସତ୍ୟବାଦୀ କରେ । ମାତ୍ର ଉପରୋକ୍ତ ବିକୃତ ଧରଣର ଈଶ୍ୱରଭକ୍ତି ଓ ମାଳା ଜପିବାଟା ଫ୍ରଏଡ଼ଙ୍କ ମତରେ ପିତା ପ୍ରତି

ବିଦ୍ରୋହଭାବରୁ ଜାତ ହୁଏ । ବାଲ୍ୟକାଳରେ ଲୋକେ ପିତୃବିଦ୍ରୋହୀ ହେଲେ ଉତ୍ତରକାଳରେ ବିକୃତଭାବରେ ଈଶ୍ୱରଭକ୍ତିପରାୟଣ ହୁଅନ୍ତି । ଶିଶୁ ପିତାଠାରୁ ନିଜର ଇଚ୍ଛାପୂରଣରେ ବାଧା ଓ ଲାଞ୍ଛନା ପାଇ ଅଜାଣତଭାବରେ ପିତା ପ୍ରତି ବିଦ୍ରୋହଭାବ ପୋଷଣ କରେ ଏବଂ ଅନ୍ୟ ଏକ ସର୍ବଶକ୍ତିଶାଳୀ ଅଦୃଶ୍ୟ ପିତାର କଳ୍ପନା କରେ । ଏହି ସର୍ବଶକ୍ତିଶାଳୀ ଅଦୃଶ୍ୟ ଓ କଳ୍ପିତ ପିତା ତାହାକୁ ତାହାର ଜନ୍ମଦାତା ପିତାର ଅତ୍ୟାଚାରରୁ ରକ୍ଷା କରିବ ଭାବି ସେ ଅଦୃଶ୍ୟ ପିତା ପ୍ରତି ଭକ୍ତିପରାୟଣ ହୋଇ ପଡ଼େ । ଯେଉଁ ସମାଜରେ ପିତାର ଶାସନ ଯେତିକି କଠୋର, ସେହି ସମାଜରେ ଧର୍ମାନ୍ଧ ( Fanatic ) ଓ ବିକୃତ ଈଶ୍ୱରଭକ୍ତିପରାୟଣଙ୍କ ସଂଖ୍ୟା ସେତିକି ବେଶୀ । ଧର୍ମାନ୍ଧ ବ୍ୟକ୍ତି ନିଜର ଧର୍ମକୁ ପ୍ରକୃତ ଧର୍ମ ମନେ କରି ଅନ୍ୟ ଧର୍ମ, ମତ ଓ ବିଶ୍ୱାସକୁ ଘୃଣା କରେ ; ସେ ତାହାର ଜୀବନକୁ ଯେଉଁ ବାଟରେ ଚଳାଏ ସେହି ବାଟକୁ ଠିକ୍ ବାଟ ବୋଲି ଭାବେ । ସେ ତାହାର ଧର୍ମଶାସ୍ତ୍ରକୁ ଉଦାରଭାବରେ ଗ୍ରହଣ ନ କରି ଅକ୍ଷରିକ ଭାବରେ ପାଳନ କରେ ; ଏଣୁ ପୂଜା, ଜପ, ବ୍ରତ ଓ ବିଧିନିଷେଧାଦି ପାଳନ କରିବାରେ ତାହାର ବହୁତ ସମୟ ଅତିବାହିତ ହୁଏ । ଗୌଣ ମନୋବୃତ୍ତି ହେତୁରୁ (Inferiority Complex) କୌଣସି କୌଣସି ବ୍ୟକ୍ତି ବା ଜାତି ଧର୍ମାନ୍ଧ ଓ ଉତ୍କଟ ଜାତୀୟବାଦୀ ହୋଇ ପଡ଼ନ୍ତି । ୟୁରୋପରେ ଜର୍ମାନଜାତିର ଉତ୍ଥାନ ହେବାରୁ ଏବଂ ତାହାର ସାମ୍ରାଜ୍ୟ ନ ରହିବାରୁ ଜର୍ମାନଜାତି ଉତ୍କଟ ଜାତୀୟବାଦୀ ହୋଇ ପଡ଼ିଥିଲା । ବହୁକାଳ ସାମ୍ରାଜ୍ୟ-ସୁଖ-ବିଳାସ ଭୋଗ କଲା ପରେ ମରହଟ୍ଟା ଓ ଇଂରେଜଙ୍କ ଦ୍ୱାରା ଏହି ସୁଖରୁ ବଞ୍ଚିତ ହୋଇ ଭାରତୀୟ ମୁସଲମାନମାନେ ହିନ୍ଦୁଙ୍କ ହାତକୁ କ୍ଷମତା ହସ୍ତାନ୍ତରିତ ହେବା ଆଶଙ୍କା କରି ଧର୍ମାନ୍ଧ ହୋଇ ପଡ଼ିଛନ୍ତି ।

ବିକୃତ ଈଶ୍ବରଭକ୍ତସମାନେ ଅଡ଼ବାଯ଼ୀ ଚିକିଏ କଥାରେ ଶପଥ କରିବସେ, ଭଗବାନଙ୍କ ଦ୍ୱାହି ପକାଏ ; ଗୋରୁ ଗାଈ ଲଗୁଡ଼ ଛୁଇଁ ଶପଥ କରେ । କଥାବାର୍ତ୍ତାରେ ସେ ଭଗବାନ ସମ୍ବନ୍ଧୀଯ଼ ଶବ୍ଦମାନ ପ୍ରକାଶ କରେ ; ସେ କୌଣସି କଥାର ସ୍ପଷ୍ଟ ଜବାବ ଦେଇ ପାରେ ନାହିଁ ; ସମାନ୍ୟ ବିଷୟରେ ମଧ୍ୟ ସେ ନିଗୂଢ଼ ତତ୍ତ୍ୱ ବିଗ୍ଚର କରିବସେ ।

ଉପ୍ଯ଼ୁକ୍ତର ଧରଣର ଜିଦି ଅନ୍ୟ ଏକପ୍ରକାର ପାଗଳାମି । ଜିଦିଖୋର ସାମାନ୍ୟ ସାମାନ୍ୟ କଥାରେ ଜିଦି ଧରି ବସେ । ଅତି ଛୋଟ ବିଷୟର ମତଭେଦ ଘଟିଲେ ସେ କର୍ମକ୍ଷେତ୍ରରୁ ଇସ୍ତଫା ଦିଏ ; ଜିଦି ହେତୁରୁ ତାହାର କୌଣସି ଗୋଟିଏ ଜୀବିକା ଦୀର୍ଘକାଳ ସ୍ଥାଯ଼ୀ ବା ଜୀବନବ୍ୟାପୀ ହୋଇ ପାରେ ନାହିଁ; ସେ ବ୍ୟବସାଯ଼, କୃଷି, ଦଲାଲଗିରି, ଚାକିରୀ ସବୁଥିରେ ହାତ ଦିଏ, ମାତ୍ର କୌଣସି କ୍ଷେତ୍ରରେ ଦୀର୍ଘଦିନ ରହି ପାରେ ନାହିଁ । ଗୃହରେ ଚିକିଏ ଚିକିଏ କଥାରେ ସେ ଅଡ଼ିବସେ ; ତାହାର କଥା ଅନୁସାରେ କାର୍ଯ୍ୟ ନ ହେଲେ ବା ତାହାର କଥା ନ ରହିଲେ, ସେ ଗୃହସଙ୍ଗରେ ସମସ୍ତ ସମ୍ପର୍କ ତ୍ୟାଗ କରେ ; ସେ ଘରକୁ ଟଙ୍କା ବା ଚିଠିପତ୍ର ପଠାଏ ନାହିଁ । ଶିଶୁର ଜିଦି ନ ରହିଲେ ସେ ରୁଷି କରି ଖାଏ ନାହିଁ ଏବଂ ଖୁବ୍ ଜୋରରେ କ୍ରନ୍ଦନ କରେ । ଛାତ୍ରର ଜିଦି ନ ରହିଲେ ସେ ସ୍କୁଲରୁ ଟ୍ରାନ୍ସଫର ସାର୍ଟିଫିକେଟ ନେଇ ଅନ୍ୟତ୍ର ଯାଏ ବା ଅନ୍ୟ ପିଲାଙ୍କୁ ମତାଇ ଧର୍ମଘଟ କରେ । ଯୌବନାବସ୍ଥାର ଛାତ୍ରଜୀବନରେ କେତେକ ଛାତ୍ରଙ୍କଠାରେ ଏହି ବିକୃତ ଧରଣର ଜିଦି ଦେଖାଯାଏ । ଏହି ଜିଦି ଥିଲେ ମଣିଷ ତାର ଜୀବନରେ କୌଣସି ପ୍ରକାର ଉନ୍ନତି ବିଶେଷତଃ ବୈଷଯ଼ିକ ଉନ୍ନତି କରି ପାରେ ନାହିଁ ।

କୌଣସି ବ୍ୟକ୍ତି ସହିତ ଦେଖା କରିବାକୁ ଯିବା ପୂର୍ବରୁ ବା କୌଣସି ସ୍ଥାନକୁ ଯିବା ପୂର୍ବରୁ ବିଶେଷ ଜାକଜମକ ସହିତ ପ୍ରସ୍ତୁତ ହେବା ଏକପ୍ରକାର ପାଗଳାମି । ଏହି ପ୍ରକାର ପାଗଳାମି ଥିଲେ ମଣିଷ ଘଣ୍ଟା ଘଣ୍ଟା ଧରି ଦର୍ପଣରେ ମୁହଁ ଦେଖେ; ଥରେ ମୁଣ୍ଡ କୁଣ୍ଡାଇ କେଶ କାଟି ସନ୍ତୁଷ୍ଟ ହୁଏ ନାହିଁ; ବାରମ୍ବାର ପୂର୍ବ ପୂର୍ବ କେଶକୁ ଭାଙ୍ଗି ଦେଇ ନୂଆ ନୂଆ ଧରଣର କେଶ କାଟେ ; ବାରମ୍ବାର ପୋଷାକ ପରିବର୍ତ୍ତନ କରେ ; ଜୋତାରେ ଦୁଇ ତିନିଥର ରଙ୍ଗ ଦିଏ ; ବଡ଼ ଦର୍ପଣ ପାଖକୁ ଯାଇ ନିଜର ଆଗକୁ ଓ ପଛକୁ ବାରମ୍ବାର ଲକ୍ଷ୍ୟ କରେ । ବାଟରେ ଯାଉଥିବାବେଳେ ଲକ୍ଷ୍ୟ ସ୍ଥଳରେ ପହୁଞ୍ଚି କିପରି ଆଚରଣ ପ୍ରକାଶ କରିବ, ସେ ମନେ ମନେ ତାହାର ଅଭିନୟ (Rehearsal) କରେ ।

ଅତିଶୟ ଶୀର୍ଣ୍ଣ ବା ଅତିଶୟ ସ୍ଥୂଳ ହୋଇ ବ୍ୟକ୍ତିବିଶେଷଠାରେ ବିଶେଷ ବିଶେଷ ଅଦ୍ଭୁତ ଆଚରଣ ଦେଖାଦେଇ ପାରେ । ଶୀର୍ଣ୍ଣ ବ୍ୟକ୍ତି ଜିଦିଖୋର, କ୍ରୋଧୀ, ଅଭିମାନୀ, ଷଡ଼ଯନ୍ତ୍ରକାରୀ ବା ନିନ୍ଦୁକ ହୁଏ ; ସେ ଖାଦ୍ୟ ସାମଗ୍ରୀରେ ଖୁଣ୍ଟିନାଣ୍ଟି ବାଛେ ; କୌଣସି ପ୍ରକାର ଖାଦ୍ୟରେ ସନ୍ତୁଷ୍ଟ ହୁଏ ନାହିଁ । ସ୍ଥୂଳବ୍ୟକ୍ତି ଜିଦିଖୋର, ଦରହସ୍ତା ବା ପେଟୁ ହୋଇ ପାରେ ; ସେ ଖୁବ୍ ନିଦ୍ରାଳୁ ହୁଏ ଓ ସମସ୍ତଙ୍କ ପରିହାସର ପାତ୍ର ହୁଏ । ଶିଶୁ ଖୁବ୍ ମୋଟା ହେଲେ ନିର୍ବୋଧ ପରି ଦେଖାଯାଏ । ଶିଶୁ ଖୁବ ଶୀର୍ଣ୍ଣ ହେଲେ ସାନ୍ତ୍ୱନା ଦେଲ ମାନେ ବା ମିଠା କଥାରେ କ୍ରୋଧ ପ୍ରକାଶ କରି କାନ୍ଦେ ।

**ଅତ୍ୟଧିକ କାମୋନ୍ମାଦ** ( Nimphomania ) ଗୋଟିଏ ପାଗଳାମି । ଏହି ପ୍ରକାର ପାଗଳାମି ହେତୁରୁ ପ୍ରତ୍ୟେକ ବ୍ୟକ୍ତିକୁ ଚୁମ୍ବନ କରିବାକୁ ଓ କୁଣ୍ଢାଇବାକୁ ଇଚ୍ଛା ହୁଏ । ଗର୍ଭାବସ୍ଥାରେ ଋତୁ ପୂର୍ବରୁ ବା ଋତୁର ଠିକ୍ ଅବ୍ୟବହିତ ପରେ କେତେକ ସ୍ତ୍ରୀଲୋକ

ଏହିପରି କାମୋନ୍ମାଦଗ୍ରସ୍ତା ହୁଅନ୍ତି । ଏହି ଅବସ୍ଥାରେ ସ୍ତ୍ରୀ ସମ୍ପୂର୍ଣ୍ଣ ବିବେକହୀନ ହୋଇ ଗୃହର ଚାକର ସଙ୍ଗରେ ପ୍ରେମଚର୍ଚ୍ଚା ଓ ଗୁପ୍ତ ପ୍ରଣୟ କରେ ; ବିରାଡ଼ି କୁକୁରଙ୍କୁ କୋଳରେ ପୁରାଇ ଶୟନ କରେ, ମାତ୍ର ଏହି ଉନ୍ମାଦନାର ବିରାମ ପରେ ସ୍ତ୍ରୀଲୋକଟିର ଭୀଷଣ ଲଜ୍ଜା ହୁଏ ; ସେ ତାହାର କୃତକାର୍ଯ୍ୟ ପାଇଁ ବିବେକଦଂଶିତ ହୁଏ । ଭୀଷଣ କାମୋନ୍ମାଦଗ୍ରସ୍ତ ବ୍ୟକ୍ତି ଗୁରୁଜନ ବା ଉଚ୍ଚ କର୍ମଚାରୀଙ୍କ ସମକ୍ଷରେ ଅଶ୍ଳୀଳ ଶବ୍ଦ ପ୍ରୟୋଗ କରିବାକୁ ସଙ୍କୋଚବୋଧ କରେ ନାହିଁ । ସର୍ବଦା ଅଶ୍ଳୀଳ ଭାଷାରେ କଥା କହିବାକୁ ବା ଅଶ୍ଳୀଳ ଶବ୍ଦ ପ୍ରୟୋଗ କରିବାରେ ସେ ଆନନ୍ଦବୋଧ କରେ । ଧର୍ମପୁସ୍ତକ, ଦର୍ଶନଶାସ୍ତ୍ର ବା ବଡ଼ଲୋକର ଜୀବନୀ ପାଠ କରିବାକୁ ସେ ବଡ଼ କୁଣ୍ଠାବୋଧ କରେ । ଅଶ୍ଳୀଳ କବିତା, ଛବି ବା ଉପନ୍ୟାସ ପାଇଲେ ସେ ଖିଆପିଆ ଛାଡ଼ି ତହିଁରେ ମଜ୍ଜି ଯାଏ । କାମୋନ୍ମାଦଗ୍ରସ୍ତ ବ୍ୟକ୍ତି ଦିନରାତି କେବଳ କାମଚର୍ଚ୍ଚା କରି ଆନନ୍ଦ ପାଏ । କୃତ୍ରିମ ଓ ଅସ୍ୱାଭାବିକ ଉପାୟରେ ସେ କାମୋତ୍ତେଜନାକୁ ଶାନ୍ତ କରେ । ରାସ୍ତା ଘାଟରେ ସୁନ୍ଦରୀ ଲଳନାମାନଙ୍କୁ ଲାଳସ ଦୃଷ୍ଟିରେ ଚାହିଁ ରହି କାମ-ତୃଷ୍ଣାର କିଞ୍ଚିତ୍ ତୃପ୍ତି କରେ । କାମୋନ୍ମତ୍ତର ଜଡ଼ ଓ ଚେତନ ବସ୍ତୁ ସମ୍ବନ୍ଧରେ ଜ୍ଞାନ ମଧ୍ୟ ଲୋପ ହୋଇଥାଏ ; ସ୍ୱାଭାବିକ ରତି-କ୍ରିୟାରୁ ବଞ୍ଚିତ ହୋଇ ସେ ଜଡ଼ ବସ୍ତୁ ସହିତ ବା ନିଜର ହସ୍ତାଦି ସାହାଯ୍ୟରେ ଯୌନକ୍ରିୟା ସମ୍ପାଦନ କରେ । ଗୋଲ, ଲମ୍ବା ଓ କୋମଳବସ୍ତୁ, ଗର୍ତ୍ତଯୁକ୍ତ କୋମଳ ବସ୍ତୁ ଯଥାକ୍ରମେ ପୁରୁଷର ଶିଶ୍ନସୂଚକ ଓ ସ୍ତ୍ରୀର ଯୋନିସୂଚକ ହୋଇଥିବାରୁ କାମୋନ୍ମାଦଗ୍ରସ୍ତ ବ୍ୟକ୍ତିର ବିଶେଷ ଆଦରର ସାମଗ୍ରୀ ହୋଇପଡ଼େ ।

**ଶୁଚି ବାୟୁ ବିକାର** (Fastidiousness)—ଏହା ଏକ ଭୟଙ୍କର ମାନସିକ ବିକୃତି । ସାଧାରଣ ଭାଷାରେ ଏହାକୁ ଖୁଁପରାଡ଼ିଆଁ ପ୍ରକୃତି

କୁହାଯାଏ । ଏହି ବିକାର ଥିଲେ ମଣିଷ ମନରେ ଅପବିତ୍ର ବା ଅଶୁଚି ହୋଇ ପଡ଼ିବାର ଗୋଟାଏ ପ୍ରବଳ ଆତଙ୍କ ଜନ୍ମେ । ସ୍ତ୍ରୀଲୋକ-ମାନଙ୍କଠାରେ ଏହି ବିକାର ବେଶୀ ଲକ୍ଷିତ ହୁଏ । ଅତି ଶୈଶବରେ ଶିଶୁ ନିଜର ପାୟୁ ଓ ଉପସ୍ଥନିର୍ଗତ ମଳମୂତ୍ରାଦିକୁ ଘଣ୍ଟା ଚକଟା କରିବାକୁ ସୁଖକର ମନେ କରେ । ମଳମୂତ୍ରାଦି ଯେ ଅପରିଷ୍କାର ଓ ଘୃଣ୍ୟ ବସ୍ତୁ ଏ ଧାରଣା ଶିଶୁର ନ ଥାଏ ; ଫଳରେ ପିତା ମାତା ଶିଶୁକୁ ତାଡ଼ନାଦି ଶାସନ ଫଳରେ ଉପଲବ୍ଧି କରାଇ ଦିଅନ୍ତି ଯେ ହାତରେ ମଳମୂତ୍ରାଦି ଘାଣ୍ଟିବାଟା ଅତି ଘୃଣ୍ୟ ଓ ଅପବିତ୍ର ଆଚରଣ । ଏହି ଶାସନଫଳରେ ଶିଶୁର ମନରେ ଏକ ଧାରଣା ଜନ୍ମେ ଯେ ମଳମୂତ୍ରାଦି ଘାଣ୍ଟିବା ଅତ୍ୟନ୍ତ ଅପରିଷ୍କାର ଓ ଘୃଣ୍ୟ ଆଚରଣ । ଏହି ଧାରଣାରୁ ଶିଶୁ ନିଜକୁ ଅତ୍ୟନ୍ତ ପରିଷ୍କାର-ପରିଚ୍ଛନ୍ନ ରଖିବାକୁ ଯତ୍ନ କରେ । ଧୀରେ ଧୀରେ ଶିଶୁର ମନରେ ମଳମୂତ୍ର ପ୍ରତି ଘୃଣା ତାହାର ଅଜଣା ଭାବରେ ଅନ୍ୟାନ୍ୟ ବସ୍ତୁ ବା ବ୍ୟକ୍ତି ପ୍ରତି ମଧ୍ୟ ପ୍ରଯୁକ୍ତ ହୁଏ । ଏହି ପ୍ରକାର ଘୃଣାକୁ ସ୍ଥାନାନ୍ତରିତ ବା ରୂପାନ୍ତରିତ ଘୃଣା କୁହାଯାଏ । ଉତ୍ତରକାଳରେ ଏହି ସ୍ଥାନାନ୍ତରିତ ଘୃଣା ହେତୁ ସ୍ତ୍ରୀ ଓ ପୁରୁଷ ବିକୃତ ଭାବରେ ନିଜ ନିଜକୁ ପରିଷ୍କୃତ ପରିଚ୍ଛନ୍ନ କରିବାକୁ ଚେଷ୍ଟା କରନ୍ତି ଓ ଛୁଆଁ ଛୁତ ବାରନ୍ତି ।

କୌଣସି ବ୍ୟକ୍ତି ବହୁମାସର ତେଲଚକଟା, ଅପରିଷ୍କୃତ ଓ ଓଦା ଗାମୁଛା ପିନ୍ଧି ଠାକୁରପୂଜା କରୁଥିବାବେଳେ ଏହି ଗାମୁଛାକୁ ଅତି ପବିତ୍ର ମନେ କରେ ; ଏହି ସମୟରେ ତାହାର ଭାଇ ଯଦି ଧୋବ ଧରଧର କଇଁଫୁଲ ପରି ସଫା ଲୁଗା ପିନ୍ଧି ଠାକୁର ଘରକୁ ପଶିଆସେ, "ହାଁ ହାଁ, ଛୁଆଁ ଲୁଗା ପିନ୍ଧି ଏଠାକୁ ଆସ ନାହିଁ" ବୋଲି ଉକ୍ତ ବ୍ୟକ୍ତି ପାଟି କରେ । ଏହି ବ୍ୟକ୍ତିର ନଖରେ ଖୁବ୍ ମଇଳା ଥାଉ ପଛକେ, ଦାନ୍ତ ଖୁବ୍ ଅପରିଷ୍କୃତ ଥାଉ ପଛକେ, ସେ ଯଦି ଗାଧୋଇ

ଥାଏ, ତେବେ ଅଗାଧୁଆ ମାନ ପରିଷ୍କୃତ ପରିଚ୍ଛନ୍ନ ବ୍ୟକ୍ତିକୁ ସେ ଅପବିତ୍ର ମନେ କରେ, ସ୍ତ୍ରୀ ଖୁବ୍ ଅପରିଷ୍କାର କପ୍ତାଲୁଗା ପିନ୍ଧି ଘର ଭିତରେ କାର୍ଯ୍ୟ କରୁଛି । ଏହି ସମୟରେ ତାହାର ସ୍ୱାମୀ ସଫା ଲୁଗା ପିନ୍ଧି ଅଫିସରୁ ଫେରି ଆସିଲେ ସ୍ତ୍ରୀ ତାହାକୁ ମଇଳା ଗାମୁଛା ପିନ୍ଧାଇ ଘର ଭିତରେ ପଶିବାକୁ ଅନୁମତି ଦିଏ ।

ଶୁଚିବାୟୁ-ବିକାରଗ୍ରସ୍ତ ସ୍ତ୍ରୀଲୋକ ଘରକୁ ବାରମ୍ବାର ଓଳାଏ । ଅଳ୍ପପରିମିତ ସ୍ଥାନକୁ ଓଳାଇବାକୁ ବା ଲିପିବାକୁ ତାହାର ଦୀର୍ଘସମୟ ଅତିବାହିତ ହୁଏ । ଥରେ ଗୋଟିଏ ସ୍ଥାନକୁ ଓଳାଇ, ଧୋଇ ବା ଲିପି ପୁନଃପୁନଃ ଏହି ସ୍ଥାନକୁ ଓଳାଏ, ଧୁଏ ବା ଲିପେ, ତଥାପି ସେ ଏଥିରେ ସନ୍ତୁଷ୍ଟ ହୁଏ ନାହିଁ । କେହି ଜଣେ ଘରଭିତରେ ପଶି ତାହା ସଙ୍ଗରେ କଥାବାର୍ତ୍ତା କରି ଚାଲିଗଲା ପରେ ସେ ତାହାର ବସିଥିବା ସ୍ଥାନକୁ ଓଳାଏ, ଧୁଏ ବା ଗୋବରରେ ଲିପି ସଫା କରେ । ବାରମ୍ବାର ହସ୍ତପଦ ପ୍ରକ୍ଷାଳନ ଶୁଚିବାୟୁ-ବିକାରଗ୍ରସ୍ତ ସ୍ତ୍ରୀଲୋକର ଅନ୍ୟ ଏକ ଲକ୍ଷଣ । ହାଣ୍ଡିଶାଳରୁ ଭାତଥାଳି ଆଣି ନିଜର ସ୍ୱାମୀପୁତ୍ର ବା ଅନ୍ୟମାନଙ୍କୁ ପରିବେଷଣ କଲା ପରେ, ନଳାମୁହଁକୁ ଯାଇ ହାତଗୋଡ଼ ଧୁଏ ଏବଂ ବ୍ୟଞ୍ଜନାଦି ଆଣିବା ପାଇଁ ହାଣ୍ଡିଶାଳରେ ପଶେ । ଭାତଥାଳି ନେଇ ପରଷିବାକୁ ଯାଉଁ ଯାଉଁ ବାଟରେ ଭାତ ବା ଖପରି ଇତ୍ୟାଦି ମାଡ଼ିପକାଇଲେ ତାହାକୁ ଆଉଥରେ ସ୍ନାନ କରି ଲୁଗା ପାଲଟିବାକୁ ହୁଏ । ଶୁଚିବାୟୁଗ୍ରସ୍ତ ସ୍ତ୍ରୀ ବା ପୁରୁଷ କୌଣସି ପରିବାରରେ ଥିଲେ ପାରିବାରିକ ଜୀବନ ବଡ଼ ବିଷମୟ ଓ ଅଶାନ୍ତିମୟ ହୋଇପଡ଼େ । ତାହାର ଛୁଆଁ ଛୁତ ଓ ଖପରିଛୁଆଁ ପ୍ରକୃତି ହେତୁ ପରିବାରର ସମସ୍ତେ ବ୍ୟତିବ୍ୟସ୍ତ ହୋଇ ପଡ଼ନ୍ତି ।

ଶୁଚିବାୟୁ-ବିକାରଗ୍ରସ୍ତ ବ୍ୟକ୍ତି ପରିଷ୍କୃତ ପରିଚ୍ଛନ୍ନ ରହିବାପାଇଁ ଯେଉଁ କାର୍ଯ୍ୟ କରେ, ତାହା ଖୁବ୍ ଦୀର୍ଘ ସମୟ ଧରି କରେ । ସାଧାରଣ

ବ୍ୟକ୍ତି ୧୫ ମିନିଟ ମଧ୍ୟରେ ବହିର୍ଭୂମି କାର୍ଯ୍ୟ ଶେଷ କରି ପକାଇଲେ ଶୁଚିବାୟୁବିକାରଗ୍ରସ୍ତ ବ୍ୟକ୍ତି ପକ୍କା ଦୁଇ ଘଣ୍ଟା ପାଇଖାନାରେ ବସି ରହେ; ସ୍ନାନବେଳେ ଘଣ୍ଟା ଘଣ୍ଟା ଧରି ସେ ଦେହ ହାତ ସଫା ସୁତୁରା କରୁଥାଏ ; ଅନେକ ସମୟ ପର୍ଯ୍ୟନ୍ତ ତାହାକୁ ଖଣ୍ଡିଏ ମାତ୍ର ଲୁଗା ସଫା କରିବାର ଦେଖାଯାଏ । ଖଣ୍ଡିଏ ବାସନ ମାଜି ସଫା କରିବାକୁ ବା ଗୋଟିଏ ଘର ଝାଡ଼ୁ କରିବାରେ ତାହାର ଘଣ୍ଟାକରୁ ଅଧିକ ସମୟ କଟିଯାଏ । ତାହାର ପ୍ରତ୍ୟେକ କାର୍ଯ୍ୟ ମଠ ମଠ । ଶୁଚିବାୟୁ-ବିକାରଗ୍ରସ୍ତ ଜନନୀ ଗାଧୋଉ ଥିବାବେଳେ ଯଦି ତାହାର ଶିଶୁ କ୍ଷୁଧାରେ ଅଧୀର ହୋଇ ଚିତ୍କାର କରେ, କ୍ରନ୍ଦନ କରି ଶ୍ୱାସରୁଦ୍ଧ ହୋଇଯାଏ, ଜନନୀର ତାହାପ୍ରତି ଟିକେହେଲେ ଭ୍ରୂକ୍ଷେପ ନ ଥାଏ । ଶୁଚିବାୟୁ-ବିକାରଗ୍ରସ୍ତ ସ୍ତ୍ରୀଲୋକର ହାତରେ ରନ୍ଧନର ଭାର ପଡ଼ିଲେ ଦିନ ଦୁଇଟା ବା ତିନିଟାରେ ତାହାର ରନ୍ଧନକାର୍ଯ୍ୟ ସମାପ୍ତ ହୁଏ, ଏଣୁ ସମସ୍ତଙ୍କୁ ପରିବେଷଣ କରି ନିଜର ଭୋଜନକାର୍ଯ୍ୟ ଶେଷ କରିବାକୁ ପ୍ରାୟ ସନ୍ଧ୍ୟା ସମାଗତ ହୋଇଯାଏ । ଶୁଚିବାୟୁ ବିକାର-ଗ୍ରସ୍ତର ଚାଲି ବଡ଼ ଅଦ୍ଭୁତ ଧରଣର । ବଡ଼ ସାବଧାନତା ସହ ଗୋଡ଼ ଟେକି ଟେକି ଲୁଗାକୁ ଜାକି ଜୁକି ସେ ବାଟ ଚାଲେ ; ତାହାର ଭୟ ଥାଏ, କାଳେ କେଉଁଠି ଖପରି, ହାଡ଼ ବା ଅନ୍ୟ କୌଣସି ଅପବିତ୍ର ଦ୍ରବ୍ୟ ଜିନିଷ ସେ ମାଡ଼ି ପକାଇବ । ତାହାର ନିଜ ଆସନ ବା ବିଛଣାରେ କେହି ବସିଗଲେ ସେ ମନେ ମନେ ବା ପ୍ରକାଶ୍ୟରେ ବଡ଼ ବିରକ୍ତ ହୁଏ ।

ଗୃହସାମଗ୍ରୀ ଯଥାସ୍ଥାନରେ ସ୍ଥାପିତ ନ ହେଲେ ଶୁଚିବାୟୁ-ବିକାରଗ୍ରସ୍ତ ବ୍ୟକ୍ତି ନିଶ୍ଚିନ୍ତ ହୁଏ ନାହିଁ ଏବଂ ଏହି କାର୍ଯ୍ୟ ସମାଧାନ କରିବାରେ ତାହାର ଦୀର୍ଘ ସମୟ ଅତିବାହିତ ହୁଏ । କୌଣସି ବସ୍ତୁ ସ୍ଥାନଚ୍ୟୁତ ହେଲେ ସେ କ୍ରୁଦ୍ଧ ଓ ବିରକ୍ତ ହୁଏ । କୌଣସି

ବସ୍ତୁ ସ୍ଥାନଚ୍ୟୁତ ହେଲେ ସେ ଖୋଜି ଖୋଜି ଯଦି ଉକ୍ତ ବସ୍ତୁକୁ ନ ପାଏ, ତେବେ ମନେ ମନେ ନିଜକୁ ନିଜେ ବା ଅପର ବ୍ୟକ୍ତିକୁ ଖୁବ୍ ଗାଳିଦିଏ ।

ଅନବରତ ଗଣନା କରିବା ଗୋଟାଏ ପାଗଳାମି । ଏହି ପାଗଳାମି ଥିବା ଅଡ଼ବାଯୁଁ ନିଜର ବାକ୍ସ ବା ସିନ୍ଦୁକ ଖୋଲି ଟଙ୍କା ପଇସା ଅନେକବେଳ ପର୍ଯ୍ୟନ୍ତ ଗଣନା କରେ; ବର୍ଷ, ମାସ, ଦିନ, ବ୍ୟକ୍ତିମାନଙ୍କର ନାମ ସବୁ ସେ ବାରମ୍ବାର ଅଙ୍ଗୁଳିରେ ଗଣନା କରେ । ସର୍ବଦା ଗାନ କରିବା ବା ସିସି ଦେବା ଅନ୍ୟ ଏକପ୍ରକାର ପାଗଳାମି । କାର୍ଯ୍ୟ କରୁଥିବାବେଳେ ଖାଲି ବସିଥିବା ବେଳେ ବା ପଢ଼ିବାବେଳେ ବିକୃତିଗ୍ରସ୍ତ ବ୍ୟକ୍ତି ମୃଦୁସ୍ୱରରେ ଗାନ କରୁଥାଏ ବା ସିସି ମାରୁଥାଏ । ଚନ୍ଦ୍ରମସୀ ରଜନୀରେ ସେ ଅତ୍ୟନ୍ତ ଉତ୍ତେଜିତ ହୋଇ ଗାନ କରେ ବା ବଂଶୀ ବଜାଏ ।

ଗୁପ୍ତ ବା ଗୁହ୍ୟ ବିଷୟ ଅନ୍ୟ ନିକଟରେ ପ୍ରକାଶ କରିବା ଗୋଟାଏ ମାନସିକ ବିକୃତି । ନିଜର ସ୍ତ୍ରୀ ପୁତ୍ରାଦିଙ୍କ ଚରିତ୍ର ସମ୍ବନ୍ଧରେ ଏହି ବିକୃତିଗ୍ରସ୍ତ ବ୍ୟକ୍ତି ଅକପଟ ଭାବରେ ସଙ୍ଗୀମାନଙ୍କୁ କହିଯାଏ । ତାହାର ବର୍ଣ୍ଣନାରେ ଅତିରଞ୍ଜିତ ଭାବ ମଧ୍ୟ ରହିଯାଏ । ଏହି ବ୍ୟକ୍ତି ଗୃହକୁ ଫେରିଯିବା ପାଇଁ ଯେପରି କାତରତା ପ୍ରକାଶ କରେ, ଗୃହତ୍ୟାଗ କରିବାରେ ମଧ୍ୟ ସେହିପରି ଉତ୍ତେଜନା ଦେଖାଏ । ଅର୍ଥାତ୍ ସେ ସାମାନ୍ୟ କାରଣରୁ ଉତ୍ତେଜିତ ହୋଇ ଘର ଛାଡ଼ି ଚାଲିଯାଏ, ମାତ୍ର ଅତି ଅଳ୍ପକାଳ ବିଦେଶରେ ରହି ପୁଣି ଘରକୁ ଫେରି ଆସିବାକୁ କାତର ହୋଇପଡ଼େ । ଏଣୁ ସେ ଗୃହରେ ବା ବିଦେଶରେ କେଉଁଠି ହେଲେ ଅଧିକ କାଳ ଧୀରସ୍ଥିର ହୋଇ ରହି ପାରେ ନାହିଁ ।

ପ୍ରଚଣ୍ଡ ଗ୍ରୀଷ୍ମରେ ମଧ୍ୟ ଅନ୍ତର୍ବାସ୍ଥା ପଶମବସ୍ତ୍ରାବୃତ ହୁଏ । ସେ ଘରୁ ବାହାରକୁ ବାହାରିଲେ ପଶମବସ୍ତ୍ରରେ ଶରୀର ଆବୃତ କରି ଯାଏ । ପ୍ରଚଣ୍ଡ ଜ୍ୱରପରେ ମଧ୍ୟ ଘୋଡ଼ାଇ ହୋଇ ନ ଶୋଇଲେ ତାହାର ସୁନିଦ୍ରା ହୁଏ ନାହିଁ । କେହି ତାକୁ ଏ ବିଷୟରେ ପ୍ରଶ୍ନ କଲେ ସେ ସଦୁତ୍ତର ଦେଇ ପାରେ ନାହିଁ । ବାଳକର ବକ୍ଷରେ ସ୍ତ୍ରୀଲକ୍ଷଣ ଦେଖାଦେଲେ ସେ ଲଜ୍ଜା ଓ ସଙ୍କୋଚରେ ସର୍ବଦା ଦେହକୁ ବସ୍ତ୍ରାବୃତ କରି ରଖେ ।

ଅନ୍ତର୍ବାସ୍ଥା ଅତି ତୁଚ୍ଛ ବିଷୟକୁ ଅତି ପ୍ରୟୋଜନୀୟ ମନେ କରେ । ଛିଣ୍ଡା କନା, ଘାସ କାଠିକୁଟାକୁ ମଧ୍ୟ ସେ ସୁନ୍ଦର ଓ ମହତ୍ ମନେ କରେ । ଅତି ଇତରବସ୍ତୁ ସମ୍ବନ୍ଧରେ ସେ କବିତା ଲେଖେ । ଏହିପରି ବ୍ୟକ୍ତି ନିଜକୁ ଗୋଟାଏ ବଡ଼ ଦାର୍ଶନିକ ମନେ କରେ ।

ଇତସ୍ତତଃ ଛେପ ପକାଇବା ଅନ୍ୟ ଏକପ୍ରକାର ପାଗଳାମି । ନାକରେ ସର୍ବଦା ଅଙ୍ଗୁଳି ପୁରାଇ ନାକପୁଡ଼ାକୁ ଘାଣ୍ଟିବା, ସର୍ବଦା ପାଟିରେ ଅଙ୍ଗୁଳି ପୁରାଇ ଦାନ୍ତମାଢ଼ିକୁ ଖୁଣ୍ଟିବା, ନିଜର ନଖକୁ ଦାନ୍ତରେ କର୍ତ୍ତନ କରିବା, ଆଖିରୁ ସର୍ବଦା ଲେଞ୍ଚରି ଚପରି କାଢ଼ିବା, ଆବୃତ ଅଙ୍ଗକୁ କୁଣ୍ଡାଇ ହୋଇ ଅଙ୍ଗୁଳି ଆଘ୍ରାଣ କରିବା ଏହି ବିକୃତିର ଅନ୍ତର୍ଗତ ।

**ବିକୃତ-ଭଙ୍ଗୀ** (Mannerism)—ବିକୃତ-ଭଙ୍ଗୀଗ୍ରସ୍ତ ବକ୍ତା ବକ୍ତୃତା ଦେଲାବେଳେ ହାତ, ଗୋଡ଼ ବା ମୁଣ୍ଡ ନ ହଲାଇଲେ ବକ୍ତୃତା ଦେଇ ପାରେ ନାହିଁ । ଗୋଟିଏ ବକ୍ତା ଗୋଡ଼ହାତ ହଲାଇ ବକ୍ତୃତା କଲାବେଳେ ଯଦି ଶ୍ରୋତାମାନେ ଉତ୍ତେଜିତ ହୋଇ କରତାଳି ଦିଅନ୍ତି, ତେବେ ଏହି ବକ୍ତା ଅଙ୍ଗକୁ ଏକପ୍ରକାର ଭିନ୍ନ

ପଢ଼ିବାର ଦେଖାଯାଇଛି; ଏହା ମଧ୍ୟ ଗୋଟାଏ ବିକୃତ ଭଙ୍ଗୀ । ଶିକ୍ଷକ କ୍ଲାସରେ ଶିକ୍ଷା ଦେବାବେଳେ ଅଧିକାଂଶ ସମୟ ଆପଣାର କମିଜର ହାତକୁ ଉପରକୁ ଟେକୁଥାଏ ଏବଂ ଗୋଡ଼ହାତ ହଲଉଥାଏ । ବେଞ୍ଚରେ ବସିଥିଲାବେଳେ କେହି କେହି କ୍ଷିପ୍ରଗତିରେ ପାଦନୃତ୍ୟ କରନ୍ତି; ପାଦନୃତ୍ୟ ବନ୍ଦ ହେବାମାତ୍ରେ କାହାର କାହାର ଅସମ୍ଭାଳ ମୂତ୍ରବେଗ ଘଟେ ଏବଂ ଲୁଗାରେ ପରିସ୍ରା ବୁନ୍ଦା ପଡ଼ିଯାଏ । ଫ୍ରଏଡ଼ଙ୍କ ମତରେ ବସିବାବେଳେ ପଦନୃତ୍ୟ କରିବା ହସ୍ତମୈଥୁନର ଅବରୋଧରୁ ଘଟେ । ମାତ୍ର ହୋମିଓପାଥିର ପ୍ରତିଷ୍ଠାତା ହାନେମାନଙ୍କ ମତରେ ମୂତ୍ରବେଗଧାରଣରୁ ଏହି ପଦନୃତ୍ୟ ଘଟେ । ସମ୍ଭବତଃ ଉଭୟ କାରଣରୁ ହସ୍ତପଦ ସଞ୍ଚାଳନାଦି ବିକୃତ ଭଙ୍ଗୀମାନ ଜାତ ହୁଏ । କୌଣସି କୌଣସି ବ୍ୟକ୍ତି ଅଭିନୟଭଙ୍ଗୀରେ କଥାବାର୍ତ୍ତା କରନ୍ତି । କେହି କେହି କଥା କଥାକେ 'ଇହାଲ୍ଲୋ, ଆବେ, ଶଳାଟା, ବାହାଙ୍ଗୋ' ପ୍ରଭୃତି ଶବ୍ଦର ବାରମ୍ବାର ପ୍ରୟୋଗ କରନ୍ତି । ପ୍ରତ୍ୟେକ ବ୍ୟକ୍ତିର ସମ୍ଭାଷଣରେ ତାହାର କୌଣସି ପ୍ରିୟ ଶବ୍ଦ ଥାଏ, ଯାହାକୁ କି ସେ ବାରମ୍ବାର ପ୍ରୟୋଗ କରେ । ଉକ୍ତ ଆଚରଣମାନ ବିକୃତ ଭଙ୍ଗୀର ଅନ୍ତର୍ଗତ ।

## ପଳାୟନ ମନୋବୃତ୍ତି (Truancy) ଏବଂ ନିର୍ଜନତା

**ପ୍ରେମ**—ବିକୃତଗ୍ରସ୍ତ ବ୍ୟକ୍ତି ବାରମ୍ବାର ଘରୁ ପଳାଇଯାଏ । ବୋହୂ ତାର ଶାଶୁଘରୁ ବାରମ୍ବାର ବାପଘରକୁ ଲୁଚି କରି ପଳାଇଯାଏ । ଛାତ୍ର ସ୍କୁଲରୁ ବାରମ୍ବାର ପଳାଇଯାଏ ବା ସ୍କୁଲକୁ ଆସିବାବେଳେ ପୋଲ୍ ତଳେ ବା ଗୋଟାରେ ଲୁଚିଯାଇ ସ୍କୁଲ୍ ଛୁଟି ହେବାବେଳକୁ ପୁଣି ଘରକୁ ଫେରିଯାଏ । ପ୍ରଥମ ଯୌବନରେ କେତେକ ଛାତ୍ରଙ୍କ ଠାରେ ଏହି ମନୋବୃତ୍ତି ବିଶେଷ ଲକ୍ଷିତ ହୁଏ । ଏହା ପ୍ରାୟ ୧୪

ବର୍ଷ ବୟସରୁ ୧୮ ବର୍ଷ ବୟସ ମଧ୍ୟରେ ଘଟେ । ଏହି ସମୟରେ ଛାତ୍ର ବାରମ୍ବାର କ୍ଲାସରୁ ପଳାଇଯାଏ ବା ସ୍କୁଲ୍ ଓ ଗୃହ ତ୍ୟାଗ କରି ବିଦେଶ ଚାଲିଯାଇ ନିରୁଦ୍ଦିଷ୍ଟ ହୁଏ । ଅନ୍ୟ ଏକ ପ୍ରକାର ମାନସିକ ବିକୃତ ଅଛି, ତାହା ହେଉଛି ନିର୍ଜନତା ପ୍ରୀତି । ଏହି ବିକୃତିଗ୍ରସ୍ତ ବ୍ୟକ୍ତି ନିଜର ସ୍ତ୍ରୀ, ସନ୍ତାନ ବା ସମାଜଠାରୁ ଦୂରରେ ରହିବାକୁ ଇଚ୍ଛା କରେ । କେହି କେହି ଏକାକୀ ରହିବାକୁ ଇଚ୍ଛା କରନ୍ତି; କେହି କେହି ଏକାକୀ ଗୋଟିଏ ପ୍ରକୋଷ୍ଠରେ ଅବସ୍ଥାନ କରି ଚାହାନ୍ତି ଯେ ଅନ୍ୟ ପ୍ରକୋଷ୍ଠରେ ଲୋକେ ରହନ୍ତୁ । ଅର୍ଥାତ୍ ସେ ନିଜେ ଯେଉଁ ପ୍ରକୋଷ୍ଠରେ ଥାଏ, ସେହି ପ୍ରକୋଷ୍ଠରେ ସେ ଏକାକୀ ରହିବାକୁ ଚାହେଁ ଏବଂ ଅନ୍ୟ କାହାକୁ ସେଠାରେ ରହିବାକୁ ଦିଏ ନାହିଁ, ମାତ୍ର ସେ ଚାହେଁ ଯେ ତାର ଚତୁର୍ଦ୍ଦିଗସ୍ଥ ପ୍ରକୋଷ୍ଠମାନଙ୍କରେ ଅନ୍ୟାନ୍ୟ-ମାନେ ଅବସ୍ଥାନ କରନ୍ତୁ । କାଳ୍ପନିକ ଓ ବିକୃତ ରମଣାକାଂକ୍ଷାର ପରିତୃପ୍ତି ପାଇଁ ପ୍ରଥମ ଯୌବନରେ ଅନେକେ ଏକାକୀ ଶୁଆବସା କରିବାକୁ ଭଲ ପାନ୍ତି ।

**ବାଚାଳ**—ବାଚାଳକୁ ପ୍ରଶ୍ନ କଲେ ସେ ଅନବରତ ବକିଯାଏ । ଗୋଟିଏ ସାମାନ୍ୟ ବିଷୟର ହଁ ବା ନାହିଁ ଉତ୍ତର ଦେବାକୁ ଯାଇ ସେ ଦୀର୍ଘ ସମୟ ଧରି ବକ୍ତୃତା ଦିଏ; ଗୋଟାଏ ବିଷୟ ସମ୍ବନ୍ଧରେ କହିବାକୁ ଯାଇ ଅନ୍ୟ ଏକ ବିଷୟରେ ଉପନୀତ ହୁଏ; ଗଭୀର ଦାର୍ଶନିକ ତତ୍ତ୍ୱ ବିଷୟରେ କଥା ଆରମ୍ଭ କରି ଭୂତ ପ୍ରେତ ଗପ ଓ ବୁଢ଼ୀ ଅସୁରୁଣୀର ଗପ କହି ବିଷୟଟି ଶେଷ କରେ; କଥା କହୁ କହୁ ରାତ ପାହିଯାଏ, ଅଥଚ କଥାର ସମାପ୍ତି ହୁଏ ନାହିଁ । ଶିକ୍ଷକ ଇତିହାସ ଶିକ୍ଷା ଦେଉ ଦେଉ ଫୁଟ୍‌ବଲ୍ ମ୍ୟାଚ୍ ସମ୍ବନ୍ଧରେ ପିଲାଙ୍କ ସଙ୍ଗେ ଗପ କରି ବସେ । ଛାତ୍ର ପଟିତବ୍ୟ ବିଷୟର ପ୍ରଶ୍ନ ପଚାରିବାକୁ ଯାଇ ଅସମ୍ବନ୍ଧୀୟ ଓ ଅହେତୁକୀ ପ୍ରଶ୍ନ କରେ ।

**ବିଷୟ କର୍ମରେ ଅନାସ୍ଥା**—ମାନସିକ ବିକୃତି ହେତୁ କେହି କେହି ବିଷୟ କାର୍ଯ୍ୟରେ ଘୋର ଅନାସ୍ଥା ପ୍ରକାଶ କରି ଆଳସ୍ୟରେ କାଳ କ୍ଷେପଣ କରନ୍ତି । ଏହି ବିକୃତିଗ୍ରସ୍ତ ବ୍ୟକ୍ତି ଅନେକ ବେଳରେ ଶଯ୍ୟାତ୍ୟାଗ କରେ; ସେ ତାସ ପଶା ଖେଳିବାରେ ବା ପଡ଼ୋଶୀ ସଙ୍ଗରେ ଖୁସ୍ ଗପ କରି ସମୟ କଟାଏ । ସେ ଘର ପିଣ୍ଡାରେ ବସି ଖାଲି ଗାଲ୍‌ଗୁଲ୍ଫ କରେ, ଛୋଟ କଥାକୁ ବଡ଼ ଆକାରରେ ଅତିରଞ୍ଜିତ କରି ପ୍ରକାଶ କରେ । ଗୋଟିଏ ୩୦ ବର୍ଷ ବୟସ୍କ ସମର୍ଥ ଯୁବକର ୫ ବର୍ଷ ପର୍ଯ୍ୟନ୍ତ ନିମ୍ନଲିଖିତ ବିକୃତ ଆଚରଣ ଦେଖାଯାଇଥିଲା । ସେ ବିଶ୍ୱବିଦ୍ୟାଳୟର ଜଣେ ଉଚ୍ଚ ଉପାଧିଧାରୀ ଥିଲା । ତାହାର ପିତା ଜଣେ ବଡ଼ ଡାକ୍ତର ଥିଲେ । ଏଣୁ ଘରେ କିଛି ଅଭାବ ନ ଥିଲା । ସେ ଯୁବକଟି ସକାଳ ୭ଟା ରେ ଶଯ୍ୟାତ୍ୟାଗ କରି ଦାନ୍ତ ଘଷି କିଛି ଜଳଖିଆ କରେ; ତତ୍ପରେ ଗାଁରେ ବୁଲିବାକୁ ଯାଏ । ସଙ୍ଗୀ ମେଳରେ ଗପ କରି କରି ୧୦ ଟା ରେ ଘରକୁ ଫେରି ସ୍ନାନ ଭୋଜନ ପରେ ଦୀର୍ଘ ୩।୪ ଘଣ୍ଟା ଶୁଏ; ତତ୍ପରେ ତାହାର ଗୃହରେ କେତେକ ସଙ୍ଗୀ ଆସି ଯୋଟନ୍ତି । ସେମାନଙ୍କ ସଙ୍ଗେ ସେ ରଙ୍ଗ ରହସ୍ୟ କରେ ବା ତାସ ପାଲି ଖେଳେ । ସନ୍ଧ୍ୟା ବେଳକୁ ଜଳଖିଆ କରି ରାତି ଦଶଟା ପର୍ଯ୍ୟନ୍ତ ଗାଁରେ ସଙ୍ଗୀମେଳରେ ଗପ ବା ଗାନ ଇତ୍ୟାଦି କରି ଘରକୁ ଫେରି ଭୋଜନ ପରେ ଶୟନ କରେ । ପରଦିନ ପ୍ରାତଃକାଳରେ ଶଯ୍ୟାତ୍ୟାଗ କରି ଅବିକଳ ପୂର୍ବ ଦିନ ପରି ଆହାର ବିହାର ଓ ନିଦ୍ରାରେ ସେ ପୁଣି ମାତିଯାଏ ।

**ବ୍ୟକ୍ତିବିଶେଷ ପ୍ରତି ବିରକ୍ତି**—ମାନସିକ ବିକୃତିଗ୍ରସ୍ତ ବ୍ୟକ୍ତି ବିଶେଷ ବିଶେଷ ବ୍ୟକ୍ତିଙ୍କ ପ୍ରତି ବିରକ୍ତି ପ୍ରକାଶ କରେ । କେହି କେହି ସ୍ତ୍ରୀଜାତି ଉପରେ ବିଶେଷ ବିରକ୍ତ ହୁଅନ୍ତି ଏବଂ ସ୍ତ୍ରୀମାନଙ୍କୁ ସବୁ ଅନର୍ଥର ମୂଳ ବୋଲି ମନେ କରନ୍ତି । ଏହି ବିକୃତିଗ୍ରସ୍ତ ବ୍ୟକ୍ତି

ବାଟରେ ଗୃଲଯାଉଥିବା ଯେ କୌଣସି ସ୍ତ୍ରୀଲୋକଙ୍କୁ ତାହାର ପଛରେ ନାନାପ୍ରକାର ସମାଲୋଚନା କରେ । କେହି କେହି ବୃଦ୍ଧ-ଲୋକଙ୍କୁ ବିଶେଷ ସମାଲୋଚନା କରନ୍ତି ଏବଂ ବଦ୍ଧବୃଦ୍ଧ୍ୟକ୍ତଙ୍କର କଥାକୁ ଗ୍ରାହ୍ୟ କରନ୍ତି ନାହିଁ ; ଏହି ବିକୃତଗ୍ରସ୍ତ ବ୍ୟକ୍ତି ବୁଢ଼ାର କଥାକୁ ହସରେ ଉଡ଼ାଇ ଦିଏ । କେହି କେହି ବାଳକ ବାଳିକାଙ୍କ ଉପରେ ଅଯଥା ବିରକ୍ତ ହୋଇ ସେମାନଙ୍କୁ ମାରଧର କରନ୍ତି । ଏହି ବିକୃତ-ଗ୍ରସ୍ତ ବ୍ୟକ୍ତି ଛୋଟ ଛୋଟ ବାଳକ ବାଳିକାଙ୍କୁ ନାନାପ୍ରକାର ଶାସନ କରି ସେମାନଙ୍କ ଉପରେ ପ୍ରଭୁତ୍ୱ କରେ । ବୟସ୍କ ଲୋକଠାରେ **ପିଲାଳିଆ** ଭାବ ଦେଖାଯାଏ ; ସେ ଛୋଟ ଛୋଟ ବାଳକ ବାଳିକାଙ୍କ ସହ ଖେଳ କୌତୁକ କରି ସେମାନଙ୍କୁ ମାରଧର କରେ ; ସେ ସେମାନଙ୍କ ସଙ୍ଗରେ ଲୁଚକାଳି ଖେଳେ ; ତାହାର ଆତ୍ମୀୟ ସ୍ୱଜନ-ମାନେ ତାହାର **ପିଲାଳିଆ** ଭାବ ଦେଖି ଦୁଃଖିତ ହୁଅନ୍ତି ।

**ବ୍ୟସ୍ତବାଗୀଶ**—ବ୍ୟସ୍ତବାଗୀଶ ସର୍ବଦା କାର୍ଯ୍ୟବ୍ୟସ୍ତ ରହେ ଏବଂ ଖୁବ ଶୀଘ୍ର ଶୀଘ୍ର ତାହାର **ଆଚରଣ**ମାନ ପ୍ରକାଶ କରେ । ସେ ଏତେ ବ୍ୟସ୍ତ ଯେ ତାହାକୁ ସମୟ ଆଦୌ ଅଣ୍ଟେ ନାହିଁ । ସେ ପାଇଖାନାକୁ ଲୋଟା ଧରି ଯାଇ ସଙ୍ଗେ ସଙ୍ଗେ ଫେରିଆସେ, ମନେ ହୁଏ ସେ ଆଦୌ ଝାଡ଼ା ଫେରି ନାହିଁ । ସେ ଭାତଥାଳି ପାଖରେ ବସି ଟାଉ ଟାଉ ଦୁଇଗୁଣ୍ଡା ପୁରାଇ ଦେଇ ଉଠି ପଡ଼େ ; ଖାଇ ସାରି ମୁହଁ ହାତ ଧୋଇବା ପରେ ତାହାର ହାତରେ ଋଇଠା ଲାଗି ଥିବାର ଦେଖାଯାଏ । ଦୁଇଲୋଟା ପାଣିରେ ତାହାର ସ୍ନାନକାର୍ଯ୍ୟ ଶେଷ ହୋଇଯାଏ । ସେ କୌଣସି କାର୍ଯ୍ୟ କରୁଥିବାବେଳେ ଦେଖାଯାଏ ଯେପରି କି ସେ ସମୟ ସଙ୍ଗରେ ଘୋଡ଼ଦୌଡ଼ କରୁଛି । ବ୍ୟସ୍ତବାଗୀଶ ସର୍ବଦା ମନେ କରେ ଯେ, ତାହାର ସମୟ ବୃଥା ଗଲା ବା କ୍ଷୟ ହେଲା ବା ଶୀଘ୍ର ଶୀଘ୍ର ଶେଷ ହୋଇଗଲା ।

**ଅଦ୍ଭୁତ ଧରଣ** (Eccentricity)—ଅଦ୍ଭୁତ ଧରଣର ବ୍ୟକ୍ତିଠାରେ ନାନାବିଧ ଅଦ୍ଭୁତ ପ୍ରକାରର ଆଚରଣ ଦେଖାଯାଏ । ବିଶ୍ୱବିଦ୍ୟାଳୟର ଉଚ୍ଚ ଉପାଧିଧାରୀ ଜଣେ ଯୁବକର ମନେ ହୁଏ ଯେ ସେ ଜଣେ ବ୍ରାହ୍ମଣ ; ସେ ହଠାତ୍ ତାହାର ପୂର୍ବ ବେଶଭୂଷା ତ୍ୟାଗ କରି ମସ୍ତକରେ ଶିଖା ରଖି କପାଳରେ ଚନ୍ଦନ ଲେପେ ; ସର୍ବଦା ଗେରୁଆ ଲୁଗା ପିନ୍ଧେ ଓ ବରଡ଼ା ଛତା ବ୍ୟବହାର କରେ । ଜଣେ ଗୃହସ୍ଥ ବ୍ୟକ୍ତିର ତାହାର ସ୍ତ୍ରୀଠାରେ ବିଶେଷ ପ୍ରେମ ଥାଏ, ହଠାତ୍ ଦିନେ ତାହାର ମନେ ହୁଏ ଯେ ସେ ଅନ୍ୟାୟ କରୁଛି, ଏଣୁ ବ୍ରହ୍ମଚର୍ଯ୍ୟ ପାଳନ କରି ଏକାକୀ ଶୟନ କରେ । ଜଣେ ଉତ୍ତମର୍ଣ୍ଣ ମହାଜନର ହଠାତ୍ ବୈରାଗ୍ୟ ଉପସ୍ଥିତ ହୁଏ; ସେ ଦାନ, ପ୍ରାୟଶ୍ଚିତ୍ତ ଓ ବ୍ରାହ୍ମଣ ଭୋଜନାଦି କରାଏ । ମାତ୍ର ମାନସିକ ଦୁର୍ବଳତା ହେତୁ ଅଦ୍ଭୁତ ବ୍ୟକ୍ତିଙ୍କର ପରିବର୍ତ୍ତିତ ଆଚରଣମାନ ବେଶୀଦିନ ସ୍ଥାୟୀ ହୋଇ ପାରେ ନାହିଁ । ଏହିପରି ବ୍ୟକ୍ତିମାନେ ବଡ଼ ଅବ୍ୟବସ୍ଥିତଚିତ୍ତ ; ଏମାନେ ଖୁବ୍ ବଡ଼ ବଡ଼ କଥା ଭାବନ୍ତି ; ଉଚ୍ଚ ଧରଣର କଳ୍ପନା ଓ ଚିନ୍ତା କରି ପାରନ୍ତି । ମାତ୍ର ଏମାନଙ୍କର ଚେଷ୍ଟାଶକ୍ତି (will force) କଳ୍ପନାଶକ୍ତି ତୁଳନାରେ ଦୁର୍ବଳତର ଥିବାରୁ ଏମାନେ କଳ୍ପନାକୁ ଦୀର୍ଘକାଳ କାର୍ଯ୍ୟକାରୀ କରି ପାରନ୍ତି ନାହିଁ । ମହମ୍ମଦ ତୋଗଲକ ଏହିପରି ଜଣେ ଉଚ୍ଚ କଳ୍ପନାକାରୀ ବ୍ୟକ୍ତି ଥିଲେ ; ମାତ୍ର ତାଙ୍କର ଚେଷ୍ଟାଶକ୍ତି ଦୁର୍ବଳତର ଥିବାରୁ ତାଙ୍କର କଳ୍ପନାଗୁଡ଼ିକ ଦୀର୍ଘକାଳ ଯାଏ କାର୍ଯ୍ୟକାରୀ ହୋଇ ପାରି ନ ଥିଲା । ଡାକ୍ତର ଯାଇ ସ୍କୁଲରେ ଛାତ୍ରମାନଙ୍କୁ ବକ୍ତୃତା ଦେଇ କୁହେ ଯେ ସିଧା ନ ବସିଲେ ମେରୁଦଣ୍ଡ ବଙ୍କା ହୋଇଯାଏ । ଜଣେ ଛାତ୍ର ମନେ କଲା, ସେ ଏ ପର୍ଯ୍ୟନ୍ତ ଅନ୍ୟାୟ ଭାବରେ ବସିଛି । ହଠାତ୍ ବକ୍ତୃତା ଦେବା ଦିନଠାରୁ ସେ ସଳଖ ହୋଇ ବସିବାକୁ ଯଥାସମ୍ଭବ ଯତ୍ନ କରେ ; ବୋର୍ଡ଼ିଙ୍ଗର ପାଚକକୁ

ତାକିଦ୍ କରି କହନ୍ତିଏ ସେ ଅଙ୍ଗୁଠାରୁ ସବୁ ତରକାରୀ ଖାଇବ। ସେ ନିୟମିତ ଭାବରେ ସନ୍ଧ୍ୟା ସକାଳେ ଦଣ୍ଡ ବୈଠକ କରେ; ମାତ୍ର ସେ ଜଣେ ଶିକ୍ଷକଙ୍କମୁହଁରୁ ଥରେ ଶୁଣେ ଯେ ନିରର୍ଥକ ଦଣ୍ଡ ବୈଠକ ଅପେକ୍ଷା ବଗିଚାରେ କୋଡ଼ ହାଣିଲେ ବ୍ୟାୟାମ ସଙ୍ଗେ ସଙ୍ଗେ କିଛି ଫସଲ ମଧ୍ୟ ଅମଦାନି ହେବ; ହଠାତ୍ ସେ ଦଣ୍ଡ ବୈଠକ ଛାଡ଼ି କୋଡ଼ ଧରେ। ମାତ୍ର ଏହିପରି ବ୍ୟକ୍ତି ଚିରଅବ୍ୟବସ୍ଥିତଚିତ୍ତ, ଏଣୁ ତାହାର ଆଚରଣ ବା ଅଭ୍ୟାସମାନ ସ୍ଥାୟୀ ହୋଇ ପାରେ ନାହିଁ।

**ସତର୍କ ଏବଂ ସନ୍ଦିଗ୍ଧ**—ବିକୃତ ଧରଣର ସତର୍କତା ଅନ୍ୟ ଏକ ପ୍ରକାର ପାଗଳାମି। ଏହି ବିକୃତଗ୍ରସ୍ତ ବ୍ୟକ୍ତିର ମନରେ ସର୍ବଦା ସନ୍ଦେହ ଓ ଅଶାନ୍ତି ଥାଏ। ଟଙ୍କାବାକ୍ସରେ ଚାବି ପକାଇ ଘରୁ ବାହାରି ବାଟରେ ମନେ ପଡ଼େ ଯେ ଟଙ୍କା ବାକ୍ସରେ ସେ ଚାବି ଦେଇ ନାହିଁ। ଏଣୁ ସେ ବାଟରୁ ଫେରି ଆସି ଟଙ୍କା ବାକ୍ସକୁ ଭଲ କରି ଦେଖେ ଯେ ଚାବି ଦେଇଛି କି ନାହିଁ, ରାତିରେ ଦାଣ୍ଡ କବାଟ କିଳି ଖଟରେ ଶୋଇ ସେ ଭାବେ ଯେ କବାଟରେ ଶିକୁଳୀ ଦେଇ ନାହିଁ ପରା! ଏଣୁ ପୁଣି ଥରେ କବାଟ ପାଖକୁ ଯାଇ ଶିକୁଳୀରେ ହାତ ମାରି ଦେଖେ ଶିକୁଳୀ ଲଗା ହୋଇଛି କି ନାହିଁ। ସେ ତାହାର ଶୋଇବା ସ୍ଥାନରୁ ବାରମ୍ବାର କବାଟ ପାଖକୁ ଯାଇ ଶିକୁଳୀରେ ହାତ ମାରି ଦେଖେ ଶିକୁଳୀ ଦିଆ ହୋଇଛି କି ନାହିଁ। ସେ ନିଜର ସ୍ତ୍ରୀକୁ ସନ୍ଦେହ କରି ଶୋଇବା ଘରର ଦରଜା ଭିତର ପାଖରୁ ତାଲା ବନ୍ଦ କରି ଶୁଏ; ତାହାର ଆଶଙ୍କା ଥାଏ, ଯାହେ ତାହାର ସ୍ତ୍ରୀ ଦ୍ୱାର ଖୋଲି ଚାଲିଯିବ। ସେ ତାହାର ସ୍ତ୍ରୀକୁ ସନ୍ଦେହ କରି ଧାନଅମାର, ଲୁଗାପଟା ଓ ବାସନକୁସନ ଏବଂ ଅଳଙ୍କାର ଥିବା ବାକ୍ସରେ ତାଲା ପକାଇ ଚାବି ନିଜ ପାଖରେ ରଖେ। ସେ ତାହାର ଚାକର ବାକରଙ୍କୁ ସନ୍ଦେହ କରି

ପ୍ରତ୍ୟହ ସନ୍ଧ୍ୟା ସକାଳେ ଘରର ଅସବାବ୍‌ପତ୍ର ଗଣି ମନେ ରଖେ, ନଡ଼ିଆ ଗଛରେ ଥିବା ନଡ଼ିଆ ଓ ବାଇଗଣ କିଆରୀରେ ବାଇଗଣର ସଂଖ୍ୟା ଗଣି ମନେ ରଖେ । ସେ ତାହାର ଟଙ୍କା ବାକ୍‌ସର ଟଙ୍କା ପଇସାକୁ ବାରମ୍ବାର ସଂଖ୍ୟା କରେ । ସେ ତାହାର ସ୍ତ୍ରୀ ପୁତ୍ର ଗୃହର ଚାକର ସମସ୍ତଙ୍କୁ ସନ୍ଦେହ କରେ, କାହାର ପ୍ରତି ବିଶ୍ୱାସ ବା ଆସ୍ଥା ରଖି ପାରେ ନାହିଁ । କବାଟରେ ବା ବାକ୍‌ସରେ ତାଲା ପକାଇ ବାହାରକୁ ଗଲା ପୂର୍ବରୁ ଦୀର୍ଘ ସମୟ ଧରି ଏହି ତାଲାକୁ ଟାଣି ବା ହଲାଇ ବାରମ୍ବାର ଦେଖେ ଯେ ତାହାର ଏହି ତାଲାରେ ଗୁଡ଼ି ଠିକ୍ ପଡ଼ିଛି କି ନାହିଁ । ଗୋଟାଏ ଅଜଣା ଆତଙ୍କ ଏବଂ ସ୍ମୃତି-ଶକ୍ତିର ଅତ୍ୟନ୍ତ ଦୁର୍ବଳତା ହେତୁରୁ ଲୋକ ବିକୃତଭାବରେ ସତର୍କ ଓ ସନ୍ଦିଗ୍ଧ ହୁଏ । ଫ୍ରଏଡ଼ଙ୍କ ମତରେ ପ୍ରବଳ କାମର ଅତୃପ୍ତିରୁ ( unfulfillment of Libido ) କ୍ରୋଧ ଏବଂ ଆତଙ୍କର ସୃଷ୍ଟି ହୁଏ । କ୍ରୋଧ ଏବଂ ଭୟରୁ ମନରେ ଏକପ୍ରକାର ଅର୍ଦ୍ଧ-ଚେତନାବସ୍ଥାର ଜନ୍ମ ହୁଏ । ଅର୍ଥାତ୍ ମନୁଷ୍ୟର ପୂର୍ଣ୍ଣ ଚେତନା ନ ରହି, ଏହି ଚେତନାବସ୍ଥାର ଅନେକାଂଶ ଲୁପ୍ତ ହୋଇଯାଏ । ଅର୍ଦ୍ଧଚେତନାବସ୍ଥା ସ୍ମୃତିବିଭ୍ରମ ( Forgetfulness ) ଘଟାଏ । ଅତି ମାତ୍ରାରେ ସତର୍କ ହେବା ବା ସନ୍ଦିଗ୍ଧ ହେବା ଯୋଉ ଏ ମାନସିକ ବିକୃତି—ଯାହା କି ଏହି ସ୍ମୃତିବିଭ୍ରମରୁ ଉତ୍ପନ୍ନଥାଏ ।

**ସର୍ବଘୋଟ ଦିବାକର**—ଯେଉଁ ବ୍ୟକ୍ତିର କୌଣସି ପ୍ରକାର ଅଗ୍ରୁହ ବିଗ୍ରହ ନ ଥାଏ ( unscrupulous ) ଯେଉଁ ବ୍ୟକ୍ତି ସମାଜର ଅଗ୍ରୁହ ବ୍ୟବହାର ରୀତିନୀତିକୁ ବେଳେ ବେଳେ ଟିକିଏ ମାନି ଚଳେ ଏବଂ ଅନ୍ୟବେଳେ ପଦଦଳିତ କରେ, ତାହାକୁ ସାଧାରଣ ଭାଷାରେ ସର୍ବଘୋଟ ଦିବାକର କୁହାଯାଏ । ସର୍ବଘୋଟ ଦିବାକର ଜର୍ବଁବାର ଭାବରେ ପାଇଖାନାରେ ଝାଡ଼ା ବସି ଲୁଟିଭିଙ୍କା

ଗୈବାଏ; ସେ ଅପରିଷ୍କୃତ ସ୍ଥାନରେ ଭୂଇଁରେ ଖୋଲା ଦେହରେ ଶୋଇଯାଏ । ସେ ଗାମୁଛା ଖଣ୍ଡେ ପିନ୍ଧି ୩।୪ ମାଇଲ୍ ପଥ ଅତିକ୍ରମ କରି ଅସେ ଏବଂ ବଜାରମଧ୍ୟରେ ବୁଲି ଅସେ । ସେ ବାଟରେ ଚାଲି ଯାଉଥିବା ବେଳେ ପୁରି ତରକାରୀ କିଣି ଖାଇ ଚାଲିଥାଏ ; ପାଣି ଅଭାବରେ ଖାଇ ସାରି ମୁଣ୍ଡରେ ହାତ ପୋଛିଦିଏ ; ସେ ପାଣି ଅଭାବରୁ ଝାଡ଼ା ଫେରି ସାରି କାଗଜ ବା ରୁମାଲ୍ ବ୍ୟବହାର କରେ । ନଈ ପାରି ହୋଇ ଯାଉଥିବା ବେଳେ ସେ ଲୁଗା ଭିଜିବା ଅଶଙ୍କାରେ ସମ୍ପୂର୍ଣ୍ଣ ଉଲଗ୍ନ ହୋଇପଡ଼େ । ପରିବାରର କେହି ମରିଗଲେ ସବ୍‌ଠୋଁ ବଡ଼ାକରି କୌଣସି ଶୋକଚିହ୍ନ ଧାରଣ କରିବା ଆବଶ୍ୟକ ମନେ କରେ ନାହିଁ । ପିତା ବା ମାତା ମରିଗଲେ ସେ ଶାସ୍ତ୍ରବିହିତ ଶୋକର ଚିହ୍ନ ପରିତ୍ୟାଗ କରେ; କ୍ଷୌର କାର୍ଯ୍ୟ ବା ତୈଳମର୍ଦ୍ଦନ ବର୍ଜ୍ଜନାଦିକୁ କୁସଂସ୍କାର ମନେ କରି ପ୍ରତ୍ୟହ ସେଫ୍‌ଟି ରେଜରରେ କ୍ଷୌର ହୁଏ ; ଦଶାହରେ ମୃତ ଜନକ ଜନନୀକୁ ଭକ୍ତି ଦେଖାଇ ସେ ମସ୍ତକ ମୁଣ୍ଡନ କରେ ନାହିଁ ।

ଆଡ଼ବାୟୁ ଝାଡ଼ା ଫେରୁଥିବା ବେଳେ ବହି ଧରି ପଢ଼ୁଥାଏ ବା ପଦ୍ୟ ରଚନା କରେ । ଏଣୁ ତାହାର ଝାଡ଼ା ଫେରିବାରେ ଦୀର୍ଘ ସମୟ କଟିଯାଏ । ଆଡ଼ବାୟୁ ପ୍ରତ୍ୟହ ବ୍ୟାୟାମ କରେ, ଖାଦ୍ୟସାର ବସ୍ତୁ ଭୋଜନ କରେ ଅଥଚ ସ୍ତ୍ରୀରେ ହସ୍ତମୈଥୁନର ଦୁର୍ଦ୍ଦମନୀୟ ଇଚ୍ଛା ତ୍ୟାଗ କରି ପାରେ ନାହିଁ । ସେ ବହୁତ ସମୟ ଧରି ଜପ ତପ ଓ ପୂଜା ସନ୍ଧ୍ୟାଦି କରେ ଅଥଚ ବେଶ୍ୟା ସଙ୍ଗେ ପ୍ରୀତିର ଦୁର୍ଦ୍ଦମନୀୟ ଇଚ୍ଛା ଏବଂ ଗୁପ୍ତପ୍ରଣୟ ତ୍ୟାଗ କରି ପାରେ ନାହିଁ ।

---

## ଷଷ୍ଠ ପରିଚ୍ଛେଦ

### ସ୍ମୃତିବିଭ୍ରମ ( Forgetfulness )

ମୋହ ବା ଅର୍ଦ୍ଧଚେତନାବସ୍ଥାରୁ ସ୍ମୃତିଭ୍ରଂଶ ଘଟେ । ବିସ୍ମୃତିଗ୍ରସ୍ତ ବ୍ୟକ୍ତି ସର୍ବଦା ଅନ୍ୟମନସ୍କ ହୁଏ । ସ୍ମୃତିଶକ୍ତିର ଦୁର୍ବଳତା ହେତୁରୁ ବ୍ୟକ୍ତି ବକ୍ତାର ପ୍ରଶ୍ନର ପୁନରାବୃତ୍ତି କରି ଉତ୍ତର ଦିଏ ; ସେ ବଧିର ବା ବଡ଼ବୋଲା ନୁହେଁ ଅଥଚ ତାହାକୁ ଗୋଟିଏ ପ୍ରଶ୍ନ ବାରମ୍ବାର ପଚାରିବା ପରେ, ଏହି ପ୍ରଶ୍ନକୁ ସେ ନିଜେ ଉଚ୍ଚାରଣ କରି ତାହାର ଉତ୍ତର ଦିଏ । ବିସ୍ମୃତିଶୀଳ ଛାତ୍ର ସର୍ବଦା ଅମନୋଯୋଗୀ, ତାହା ପକ୍ଷେ ଏକାଗ୍ରଚିତ୍ତ ହେବା କଷ୍ଟକର ହୁଏ ; ପ୍ରଶ୍ନର ଉତ୍ତର ଦେବା ବେଳେ ବା ପଢ଼ିବା ବେଳେ ସେ କଦାପି ମନ ସ୍ଥିର କରି ପାରେ ନାହିଁ; ସେ ଗୋଟିଏ ପ୍ରକାର ଉତ୍ତର କହିବାକୁ ଯାଇ ଅନ୍ୟ ପ୍ରକାର ଉତ୍ତର କହି ପକାଏ । ତାହାର କହିବା ଓ ଲେଖିବାରେ ନାନାପ୍ରକାର ଭ୍ରମ ଘଟେ । ଶିବ ଶବ୍ଦ ଲେଖିବାକୁ ଯାଇ ଗିବ ଲେଖି ପକାଏ ; ସୂତା କହିବାକୁ ଯାଇ ମୂତ କହିଦିଏ । ନିର୍ଦ୍ଦିଷ୍ଟ ସମୟ ଓ ବୟସରେ ଏହି ବିସ୍ମୃତିର ପ୍ରାବଲ୍ୟ ଦେଖାଯାଏ; କେହି କେହି ଶଯ୍ୟାତ୍ୟାଗ ପରେ ପ୍ରାତଃକାଳରେ ବିସ୍ମରଣଶୀଳ ହୋଇ ପଡ଼ନ୍ତି; କେହି କେହି ଅପରାହ୍ଣରେ ଶୋଇ ଉଠିବା ପରେ ସନ୍ଧ୍ୟାକୁ ସକାଳ ବୋଲି ଭ୍ରମ କରନ୍ତି । ବାର୍ଦ୍ଧକ୍ୟରେ କାହାର କାହାର ସ୍ମୃତିବିଭ୍ରମ ଘଟେ; ବୃଦ୍ଧ ବ୍ୟକ୍ତି ଶୈଶବର ସ୍ତରକୁ ଖସିଯାଏ ଏବଂ ତାହାଠାରେ ପିଲାଳିଆ ଭାବ ଦେଖାଯାଏ । ନିର୍ଦ୍ଦିଷ୍ଟ ସ୍ଥାନରେ କେହି କେହି ବିସ୍ମୃତିଶୀଳ ହୁଅନ୍ତି । ସଭାରେ ବକ୍ତୃତା ଦେବା ପୂର୍ବରୁ ବକ୍ତା ଅନେକ କଥା କହିବାକୁ

ଭୁଲିଥାଏ, ମାତ୍ର ବକ୍ତୃତା ଦେବାବେଳେ ସବୁ କଥା ଭୁଲିଯାଇ କେଉଁଠି ଗୁଡ଼ିଏ ଅବାନ୍ତର କଥା କହିପକାଏ; ଶ୍ରୋତାମାନେ ତାହାର ଏହି ଅବାନ୍ତର ଓ ଅର୍ଥହୀନ କଥାରେ ବିସ୍ମୟ ପ୍ରକାଶ କରନ୍ତି । ପୋଷାକ ପିନ୍ଧିବା ବେଳେ ସେ ତଳ ବୋତାମ ଜାମାର ଉପର ଅଂଶରେ ଲଗାଇ, ବାଁ ଗୋଡ଼ ଜୋତା ଡାହାଣ ଗୋଡ଼ରେ ପିନ୍ଧି ଚାଲିଯାଏ । ତାହାର ଭିନ୍ନ ଭିନ୍ନ ଆଚରଣରେ ସ୍ମୃତିବିଭ୍ରମ ଦେଖାଯାଏ; ସେ ଗାଧୋଇଲା ବେଳେ ଗାଧୁଆ ତୁଠରେ କୁଣ୍ଡିକାଠି ଓ ସାବୁନ ଛାଡ଼ିଦେଇ ଚାଲିଯାଏ; କଦଳୀର ଚୋପାକୁ କଦଳୀ ଭ୍ରମରେ ଖାଇ କଦଳୀକୁ ଫୋପାଡ଼ି ଦିଏ । ତାରିଖ, ବାର ଓ ମାସର ନାମରେ ତାହାର ବରାବର ଭୁଲ ଘଟେ । ଆଜି କି ବାର ବା କେତେ ତାରିଖ, ଏହା ସେ କାଲେଣ୍ଡର ନ ଦେଖିଲେ କହି ପାରେ ନାହିଁ । ଯାହା ବର୍ତ୍ତମାନ କରିବାକୁ ହେବ ବା ଯାହା ସେ ଏଷଣି କହୁଥିଲା, କରୁଥିଲା ବା କରୁଛି, ତାହା ଭୁଲି ଯାଏ ।

ବିସ୍ମୃତିଗ୍ରସ୍ତ ନିଜର ବନ୍ଧୁ ବା ଅତିପରିଚିତ ବ୍ୟକ୍ତିର ନାମ ଉଲ୍ଲେଖ କରି ପାରେ ନାହିଁ; ୧୫ ମିନିଟ ପୂର୍ବରୁ ଯେଉଁ ବନ୍ଧୁର ନାମ ମନେ ପଡ଼ି ଯାଇଥିଲା, ବର୍ତ୍ତମାନ ତାହା ସେ ଭୁଲିଯାଏ । ସେ ପତ୍ର ଲେଖି ଲଫାପାରେ ପୂରାଇ ଲଫାପାରେ ଠିକଣା ନ ଲେଖି ପୋଷ୍ଟ ବାକ୍ସରେ ଗଳାଇ ପକାଇ ଆସେ । ବହୁ ଅତୀତ ଦିନର ଘଟଣା ତାହାର ମନେ ପଡ଼େ ଅଥଚ ଆଜି ଯାହା ଘଟିଛି ବା ବର୍ତ୍ତମାନ ଯାହା ସେ ଶୁଣିଛି, ତାହା ଭୁଲିଯାଏ । ଯାହା ସେ ବର୍ତ୍ତମାନ ପଢ଼ିଛି ବା କହୁଛି ବା କହିବାକୁ ଯାଉଥିଲା ତାହା ସେ ଭୁଲିଯାଏ । ଲେଖିବା ବେଳେ ଗୋଟିଏ ଶବ୍ଦ ଲେଖିବାକୁ ଯାଇ ଯାଇ ଆଉ ଗୋଟିଏ ଶବ୍ଦ ଲେଖିପକାଏ ।

ବିସ୍ମୃତିଗ୍ରସ୍ତ ତାହାର ନିଜ ନାମ କହିପାରେ ନାହିଁ, ସେ ନିଜେ କିଏବୁଝି ପାରେ ନାହିଁ। ସ୍ତ୍ରୀ ତାହାର ସନ୍ତାନକୁ ଚିହ୍ନିପାରେ ନାହିଁ। ଏହି ମୁହୂର୍ତ୍ତରେ ସେ କହେ ଯେ ଏ ତାହାର ଛୁଅ ନୁହେଁ, ଅନ୍ୟ ମୁହୂର୍ତ୍ତରେ କହେ, ଏ ତାହାର ଛୁଅ। ବିସ୍ମୃତିଗ୍ରସ୍ତ ବ୍ୟକ୍ତି କଥାବାର୍ତ୍ତାରେ ବହୁତ ଭ୍ରମରେ ପଡ଼େ ଏବଂ ନିଶାଖୋର ବା ଅର୍ଦ୍ଧସୁପ୍ତ ବ୍ୟକ୍ତି ପରି କଥାବାର୍ତ୍ତା କରେ।

ଶ୍ରୀମଦ୍‌ଭଗବଦ୍‌ଗୀତା ମତରେ ଛଅ ଗୋଟି ପ୍ରଧାନ ମାନସିକ ବିକୃତି ଅଛି। ଏହି ଛଅ ଗୋଟି ମାନସିକ ବିକୃତି ହେଉଛି ବିଷୟ୍-ସଙ୍ଗ ( Attachment with Sensory objects ), କାମ ( Libido or Sexual wish ), କ୍ରୋଧ, ମୋହ ( Sub-consciousness ), ସ୍ମୃତିବିଭ୍ରମ ଏବଂ ବୁଦ୍ଧିନାଶ ( Idiocy )। ଏହି ଛଅଗୋଟି ମାନସିକ ବିକୃତିରୁ ଅନ୍ୟାନ୍ୟ ବହୁବିଧ ବିକୃତିର ଉଦ୍‌ଭବ ଘଟେ। ଉକ୍ତ ଛଅଟି ବିକୃତି ମଧ୍ୟରେ ବିଷୟାସକ୍ତି ଓ କାମହିଁ ମୌଳିକ ବିକୃତି ଏବଂ ଏହି ମୌଳିକ ବିକୃତି ଯୋଡ଼ିକରୁ ଅନ୍ୟ ଚାରିଗୋଟି ବିକୃତିର ଜନ୍ମ ହୁଏ। ଉକ୍ତ ଛଅଗୋଟି ପ୍ରଧାନ ମାନସିକ ବିକୃତିମାନଙ୍କ ମଧ୍ୟରୁ ପ୍ରତ୍ୟେକଟିରେ ଅନ୍ୟ ପାଞ୍ଚଗୋଟି ବିକୃତିର ସତ୍ତା ନିହିତ ଥାଏ। ଦୃଷ୍ଟାନ୍ତସ୍ୱରୂପ ସ୍ମୃତିବିଭ୍ରମରେ ବିଷୟାସକ୍ତି ଓ ତଜ୍ଜନିତ କାମ, କ୍ରୋଧ ଏବଂ ମୋହର ସତ୍ତା ରହିଥାଏ। ଅଧିକନ୍ତୁ ଏହି ବିକୃତିରେ ନିର୍ବୋଧତା ମଧ୍ୟ ଥାଏ। ପରିଷ୍କାରଭାବରେ କହିବାକୁ ଗଲେ ବିଷୟାସକ୍ତି ଏବଂ କାମର ପ୍ରାବଲ୍ୟ ନ ଥିଲେ କେହି ବିସ୍ମୃତିଗ୍ରସ୍ତ ହୁଏ ନାହିଁ, କ୍ରୋଧଶୀଳ ଓ ବିମୂଢ଼ ନ ହେଲେ କାହାର ସ୍ମୃତିଧ୍ୱଂସ ଘଟେ ନାହିଁ ଏବଂ ବ୍ୟକ୍ତିର ସ୍ମୃତିଧ୍ୱଂସ ଘଟିଲେ ସେ ନିର୍ବୋଧ ପରି ଆଚରଣ ପ୍ରକାଶ କରେ।

ସାଧାରଣ ଲୋକେ କହନ୍ତି ଯେ, "ଲୋକର ବସ୍ତୁତ ଘଟୁ ନ ଥିଲେ ସେ ଦୁଃଖଶୋକରେ ଅତ୍ୟନ୍ତ ମ୍ରିୟମାଣ ହୋଇଯାନ୍ତି, ତାହାଙ୍କୁ ସଂସାରଟା ଅସାର, କଷ୍ଟମୟ ଓ ଯନ୍ତ୍ରଣାପ୍ରଦ ବୋଧ ହୁଅନ୍ତି । ପ୍ରିୟତମା ସ୍ତ୍ରୀ ଓ ପ୍ରାଣାଧିକ ସନ୍ତାନର ତରୋଧାନରେ ମଣିଷ ଧୈର୍ଯ୍ୟ ହରାଇ ଆତ୍ମହତ୍ୟା କରନ୍ତି; ମାତ୍ର ବସ୍ତୁତର କବଳରେ ପଡ଼ି ମଣିଷ ତାହାର ଆତ୍ମୀୟ ସ୍ୱଜନବିୟୋଗରେ ବା ଦୁଃଖରେ ଅଳ୍ପ ସମୟ ମାତ୍ର କଷ୍ଟ ପାଇ ଶୀଘ୍ର ଏହି ଦୁଃଖ ଓ ବିୟୋଗଜନିତ ଯନ୍ତ୍ରଣାକୁ ଭୁଲିଯାଏ ।" ପ୍ରକୃତରେ ଦେଖିବାକୁ ଗଲେ ମଣିଷର ଯଦି ସ୍ମୃତି-ବିଭ୍ରମ ଘଟୁ ନ ଥାନ୍ତା, ତେବେ ସେ କଦାପି ବିଷୟାସକ୍ତ ଓ କାମଗ୍ରସ୍ତ ହୋଇ ପଡୁନଥାନ୍ତା; ସେ କଦାପି କ୍ରୋଧ ଓ ଭୟରେ ଅସ୍ୱସ୍ଥ ହୋଇ କିଂକର୍ତ୍ତବ୍ୟମୂଢ଼ ହୁଅନ୍ତା ନାହିଁ, ତାହାର ବୁଦ୍ଧି ଓ ବିବେକ ସର୍ବଦା ସତେଜ ଓ ଜାଗ୍ରତ ରହିଥାନ୍ତେ, ଏଣୁ ତାହାର କୌଣସି ପ୍ରକାର ମାନସିକ ଓ ଶାରୀରିକ ଆଧି ବ୍ୟାଧି ଘଟନ୍ତା ନାହିଁ ।

ଲୋକ ଯେଉଁ ଭ୍ରମ କରେ, ତାହା ସାଧାରଣତଃ ଦୁଇ ପ୍ରକାର । ଶିଶୁ ପ୍ରଦୀପ୍ତ ଅନଳକୁ ଭ୍ରମରେ ହାତ ବଢ଼ାଇ ହାତ ପୋଡ଼ି ପକାଏ, ଏହା ଏକ ପ୍ରକାର ଭୁଲ; ଏହି ଭ୍ରମକୁ ବହିର୍ଜାଗତିକ ଭ୍ରମ (External mistake) କୁହାଯାଏ । କେହି ମିଛ କହି, ଚୋରି କରି ବିପଦରେ ପଡ଼େ, ବିପଦରେ ପଡ଼ିଲେ ମଧ୍ୟ ସେ ବାରମ୍ବାର ମିଛ କହେ ଓ ଚୋରି କରେ । ମିଛ କହିବା ବା ଚୋରି କରିବା ମଧ୍ୟ ଏକ ପ୍ରକାର ଭ୍ରମ । ସେହିପରି କ୍ରୋଧ ବା ଭୟରୁ ମଣିଷର ଅନିଷ୍ଟ ଘଟିଲେ ମଧ୍ୟ ସେ ବାରମ୍ବାର କ୍ରୋଧ ବା ଭୟ କରି ଭ୍ରମରେ ପଡ଼େ । ଏହି ପ୍ରକାର ଭ୍ରମକୁ ଅନ୍ତର୍ଜାଗତିକ ଭ୍ରମ (Internal mistake) କୁହାଯାଏ । ବହିର୍ଜାଗତିକ ଭ୍ରମ ଥରେ ଘଟିଲେ ମଣିଷ ଆଉ ଥରେ ଏପରି ଭ୍ରମ କରେ ନାହିଁ । ମାତ୍ର ଅନ୍ତର୍ଜାଗତିକ ଭ୍ରମ ସମ୍ବନ୍ଧରେ

ଅନ୍ୟ ପ୍ରକାର ନିୟମ । ମଣିଷ ଏପ୍ରକାର ଭ୍ରମ ବାରମ୍ବାର କରେ । ଏହାର କାରଣ ବିସ୍ମୃତି । ଏହି ବିସ୍ମୃତି ହିଁ ମଣିଷକୁ କ୍ରୋଧଶୀଳ, ଭୀତ, ମିଥ୍ୟାବାଦୀ, କପଟୀ, ହିଂସ୍ରକ, ଲୋଭୀ, କାମୁକ ଇତ୍ୟାଦି କରାଏ । ପ୍ରତ୍ୟେକ ମଣିଷ ଜାଣେ ଯେ—କ୍ରୋଧ, ଭୟ, ହିଂସା ଓ ଆସକ୍ତି ଇତ୍ୟାଦି ଶାରୀରିକ ଓ ମାନସିକ ସ୍ୱାସ୍ଥ୍ୟର ଅନିଷ୍ଟକାରୀ; ତଥାପି ଜୀବନରେ ସେ ଏହି ସତ୍ୟଟିକୁ ଭୁଲି କ୍ରୋଧ କରେ, ଭୟ ପାଏ ଓ ଅନ୍ୟକୁ ହିଂସା କରେ ।

ମନର ଯୋଡ଼ିଏ ଅଂଶ ବା ବିଭାଗ ଅଛି । ବଡ଼ ଅଂଶକୁ ଚିତ୍ତ ବା ଅନ୍ତଃକରଣ (Unconscious) କୁହାଯାଏ; ମନର କ୍ଷୁଦ୍ର ଶ୍ରେଷ୍ଠ ଅଂଶଟିକୁ ଚେତନ (Conscious) କୁହାଯାଏ । ଦ୍ୱିତୀୟା ଚନ୍ଦ୍ରକୁ ଲକ୍ଷ୍ୟ କଲେ ଦେଖାଯିବ ଯେ, ଧନୁଆକୃତିର ଗୋଟିଏ ଅତି ପାତଳା ଅଂଶ ସୂର୍ଯ୍ୟକିରଣରେ ଉଦ୍‌ଭାସିତ, ମାତ୍ର ଚନ୍ଦ୍ରର ଅପର ବୃହତ୍ତର ଅଂଶ ପୃଥିବୀର ଛାୟାରେ ଆବୃତ । ସୂର୍ଯ୍ୟକିରଣରେ ଉଦ୍‌ଭାସିତ ଚନ୍ଦ୍ରର କ୍ଷୁଦ୍ର ଅଂଶକୁ ମନର ଚେତନା ସଙ୍ଗେ ତୁଳନା କରାଯାଇ ପାରେ ଏବଂ ପୃଥିବୀର ଛାୟାଦ୍ୱାରା ଆବୃତ ଚନ୍ଦ୍ରର ବୃହତ୍ତର ଅଂଶକୁ ମନର ଅନ୍ତଃକରଣ ସଙ୍ଗେ ତୁଳନା କରାଯାଇ ପାରେ । ପାତଳା ମେଘ ଦ୍ୱିତୀୟା ଚନ୍ଦ୍ରକୁ ଘୋଡ଼ାଇ ପକାଉଥିବା ପରି ମୋହମେଘ ମନର ଚେତନାକୁ ମୁହୁର୍ମୁହୁଃ ଘୋଡ଼ାଇ ପକାଉଥାଏ । ମନର ଏହି ପ୍ରକାର ଅବସ୍ଥାକୁ ଅର୍ଦ୍ଧଚେତନାବସ୍ଥା (Sub-conscious state) କୁହାଯାଏ । ମନର ସାମାନ୍ୟ ଅଂଶମାତ୍ର ଚେତନ ଥାଏ, ତହିଁରେ ପୁଣି ଏ ଚେତନ ଅଂଶ ସବୁବେଳେ ଚେତନ ରହେ ନାହିଁ, ମୁହୁର୍ମୁହୁଃ ତାହା ଅର୍ଦ୍ଧଚେତନ ହେଉଥାଏ ।

କାମ ଏବଂ ତୃଷ୍ଣା ଓ ତଜ୍ଜନିତ ପ୍ରବୃତ୍ତିମାନଙ୍କର ଉତ୍ପତ୍ତିସ୍ଥଳ ହେଉଛି ମଣିଷର ଚିତ୍ତ ବା ଅନ୍ତଃକରଣ । ଜ୍ଞାନେନ୍ଦ୍ରିୟ ଓ କର୍ମେନ୍ଦ୍ରିୟ-

ମାନଙ୍କ ସଙ୍ଗେ ରୂପ, ରସ, ଗନ୍ଧ, ସ୍ପର୍ଶ ଓ ଶବ୍ଦାଦିର ସମ୍ପର୍କରୁ କାମତୃଷ୍ଣା ଓ କାମନାମାନଙ୍କର ଉଦ୍‌ଭବ ହୁଏ । ତୃଷ୍ଣା ଅନନ୍ତ ଓ ଅସୀମ ଥିବାରୁ ତାହାର ତୃପ୍ତି ହୋଇ ପାରେ ନାହିଁ ; ଏଣୁ କ୍ରୋଧ ଓ ଭୟର ଉଦ୍ରେକ ହୁଏ । କ୍ରୋଧ ବା ଭୟହେତୁ ମନର ଚେତନାରେ ବାସ କରୁଥିବା ବିବେକ ଦୁର୍ବଳ ହୋଇପଡ଼େ ବା ବିବେକର ସମ୍ପୂର୍ଣ୍ଣ ଧ୍ୱଂସ ଘଟେ । ବିବେକର ଦୁର୍ବଳତା ବା ଧ୍ୱଂସଫଳରେ ମନର ଚେତନ ଅଂଶଟି ମୁହୁର୍ମୁହୁଃ ଅର୍ଦ୍ଧଚେତନାବସ୍ଥା ପ୍ରାପ୍ତ ହେଉଥାଏ । ମନର ଚେତନା ଅଂଶଟି ଅନ୍ଧକାରମୟ ଓ ଅଜ୍ଞାତ ଚିତ୍ତର ଗୋଟିଏ ଆଲୋକିତ ଅଂଶ । ବୁଦ୍ଧି, ସ୍ମୃତି ଓ ଚେଷ୍ଟା-ଶକ୍ତିର କାର୍ଯ୍ୟକ୍ଷେତ୍ର ଏହି ଆଲୋକିତ ଅଂଶଟି ବୁଦ୍ଧିର ଜନନୀ ପ୍ରଜ୍ଞା (Intuition,) ସ୍ମୃତିର ଜନନୀ ଧାରଣା (Neme) ଏବଂ ଚେଷ୍ଟାର ଜନନୀ ପ୍ରେରଣା (Urging) । ପ୍ରଜ୍ଞା, ଧାରଣା ଓ ପ୍ରେରଣାର ବସତିସ୍ଥଳ ଅନ୍ତଃକରଣ । ମନର ଚେତନ ଅଂଶଟି ମୁହୁର୍ମୁହୁଃ ଅର୍ଦ୍ଧ ଚେତନ ହେବା ଫଳରେ ଚିତ୍ତ ମଧ୍ୟରେ ରହିଥିବା ପ୍ରଜ୍ଞା, ଧାରଣା ଓ ପ୍ରେରଣା ଏବଂ ଚେତନାରେ ରହିଥିବା ବୁଦ୍ଧି, ସ୍ମୃତି ଓ ଚେଷ୍ଟା-ମଧ୍ୟରେ ଯୋଗସୂତ୍ର ବାରମ୍ବାର ଛିନ୍ନ ହୋଇ ଯାଉଥାଏ । ଏହାହିଁ ସ୍ମୃତିବିଭ୍ରମ, ବୁଦ୍ଧିନାଶ ଓ ଚେଷ୍ଟାଶକ୍ତିର ଲୋପ ଘଟାଏ ।

କୌଣସି କାମନାର ଅତୃପ୍ତି ଘଟିଲେ ଏହି ଅତୃପ୍ତ କାମନା ଚିତ୍ତମଧ୍ୟରେ ଯାଇଁ ଅବସ୍ଥାନ କରେ । ଅନେକ ଗୁଡ଼ିଏ ଅତୃପ୍ତ କାମନା ଚିତ୍ତମଧ୍ୟରେ ଅବସ୍ଥାନ କରିଥିଲେ ଏମାନଙ୍କୁ ସୁସଂଯତ ରଖିବା ପାଇଁ ପ୍ରଜ୍ଞା, ଧାରଣା ଓ ପ୍ରେରଣାଶକ୍ତିର ଅପଚୟ ଘଟେ ଅଥଚ ଅତୃପ୍ତ କାମନାମାନଙ୍କୁ ଏମାନେ ସଂଯତ ରଖି ପାରନ୍ତି ନାହିଁ । ଅତୃପ୍ତ କାମନାମାନଙ୍କର ତୃପ୍ତିର କ୍ଷେତ୍ର ହେଉଛି ମନର ଚେତନ ଅଂଶ । ଏହି ଅତୃପ୍ତ କାମନାଗୁଡ଼ିକ ବିବେକକୁ ହଟାଇ ଦେଇ

ମନର ଚେତନ ଅଂଶକୁ ଅଧିକାର କରିବାକୁ ବାରମ୍ବାର ଚେଷ୍ଟା କରନ୍ତି । ଏହାର ଫଳରେ ଯାବତୀୟ ମାନସିକ ବିକୃତିର ଉଦ୍ଭବ ହୁଏ । ଅନେକଗୁଡ଼ିଏ ପରସ୍ପରବିରୋଧୀ ଅତୃପ୍ତ କାମନା ଏକା-ବେଳକେ ତୃପ୍ତ ହେବାକୁ ଇଚ୍ଛୁକ ହେଉଥିବାରୁ ପରସ୍ପରବିରୋଧୀ କ୍ରିୟା ବା ଆଚରଣ ପ୍ରକାଶ ପାଏ, ଏହାର ଫଳରେ ମାନସିକ ଶକ୍ତିର ଅଯଥା ଅପଚୟ ଘଟେ । ମାନସିକ ଶକ୍ତିର ଅଯଥା ଅପଚୟ ହେବାର ଅର୍ଥ ବୁଦ୍ଧିର ଦୁର୍ବଳତା, ସ୍ମୃତିବିଭ୍ରମ ଓ ଚେଷ୍ଟାଶକ୍ତିର ହ୍ରାସ । ବୁଦ୍ଧିର ଦୁର୍ବଳତା, ସ୍ମୃତିବିଭ୍ରମ ଓ ଚେଷ୍ଟାଶକ୍ତିର ହ୍ରାସ କ୍ରୋଧ, ଭୟ ଓ ସମୂଢ଼ ଅବସ୍ଥା ଆଦିର ସୃଷ୍ଟି କରେ ।

ହୃତ୍ ପିଣ୍ଡର ମୁହୁର୍ମୁହୁଃ ଘଟୁଥିବା ଉତ୍ଥାନ ପତନ କ୍ରିୟା ପରି ସ୍ମୃତି ମନର ଚେତନାରେ ବାରମ୍ବାର ଦେଖାଦେଇ ବାରମ୍ବାର ଅପସାରିତ ହୁଏ । ଅପସାରିତ ହେବାର କାରଣ କଣ ? ମନର ଯେଉଁ କ୍ରିୟାର ସ୍ମୃତି ସହିତ ସମ୍ବନ୍ଧ ଥାଏ, ଅତୃପ୍ତ ଓ ଅବରୁଦ୍ଧ ଇଚ୍ଛାର ବିଦ୍ୟମାନତାରୁ ବିରୋଧୀ କ୍ରିୟା ପ୍ରକାଶିତ ହୋଇ ସ୍ମୃତିସହ ସମ୍ବନ୍ଧ ଥିବା କ୍ରିୟାର ବାରମ୍ବାର ବ୍ୟାଘାତ ଘଟେ । ଛାତ୍ରର ପାଠକାର୍ଯ୍ୟରେ ନିରବଚ୍ଛିନ୍ନ ମନୋଯୋଗ ରହି ପାରେ ନାହିଁ ; ମୁହୁର୍ମୁହୁଃ ତାହାର ମନୋନିବେଶ ଭାଙ୍ଗିଯାଏ । ମନସ୍ତାତ୍ତ୍ୱିକ-ମାନଙ୍କ ମତରେ ସାଧାରଣ ବ୍ୟକ୍ତିପକ୍ଷେ କୌଣସି କ୍ରିୟା ବା ଭାବନାରେ ମନୋନିବେଶ ଅର୍ଦ୍ଧମିନିଟ ପର୍ଯ୍ୟନ୍ତ ମଧ୍ୟ ସ୍ଥାୟୀ ହୁଏ ନାହିଁ । କୌଣସି ଛାତ୍ରର ଦୁଇଘଣ୍ଟା ପରିଶ୍ରମ କହିଲେ ବୁଝିବାକୁ ହେବ ସେ ପ୍ରକୃତରେ ଅଧଘଣ୍ଟାଏ ମାତ୍ର ପ୍ରକୃତ ପରିଶ୍ରମ କରିଛି ଏବଂ ପରସ୍ପରବିରୋଧୀ ଭାବନା ହେତୁ ଅନ୍ୟ ଦେଢ଼ଘଣ୍ଟା ଶ୍ରମ ତାହାର ପଣ୍ଡ ହୋଇଅଛି ।

ଫ୍ରଏଡ଼ଙ୍କ ମତରେ ମଣିଷ ଅଜାଣତ ଭାବରେ ଇଚ୍ଛା କରି କେତେ ଗୁଡ଼ିଏ କାର୍ଯ୍ୟ କରିବାକୁ ଭୁଲିଯାଏ । ଦୃଷ୍ଟାନ୍ତସ୍ୱରୂପ ଗୋପାଳ ରାମଠାରୁ ଦୁଇ ଟଙ୍କା ଧାର ଆଣି ଏହି ଟଙ୍କା ପରିଶୋଧ କରିବାକୁ ଭୁଲିଗଲା । ବୁଝିବାକୁ ହେବ ଯେ ଧାର ଟଙ୍କା ରାମକୁ ଫେରାଇ ଦେବାକୁ ଗୋପାଳର ପ୍ରକୃତରେ ଇଚ୍ଛା ନ ଥିଲା । ଜଣେ ଲୋକ ଶିବ ଲେଖିବାକୁ ଯାଇ ଗିବ ଲେଖିଲା ବା ସୂକ୍ଷ୍ମ ଲେଖିବାକୁ ଯାଇ ମୂକ୍ଷ୍ମ ଲେଖିଲା । ଏଠାରେ ବୁଝିବାକୁ ହେବ ଯେ ଗ ଅକ୍ଷର ବା ମ ଅକ୍ଷର ବିଶିଷ୍ଟ ଶବ୍ଦ ସହିତ ଉକ୍ତ ଲୋକର ଅତୃପ୍ତ ଇଚ୍ଛାର କୌଣସି ଗୁପ୍ତ ଓ ପ୍ରିୟସମ୍ବନ୍ଧ ଅଛି । ଏହି ଗୁପ୍ତ ଓ ପ୍ରିୟସମ୍ବନ୍ଧ ଫ୍ରଏଡ଼ଙ୍କ ମତରେ ଯୌନମୂଳକ (Sexually connected) କୌଣସି ଶବ୍ଦକୁ ଲେଖିବା ବେଳେ ବା କହିବା ବେଳେ ଛାଡ଼ିଯିବା ଅର୍ଥ ଉକ୍ତ ଶବ୍ଦକୁ ଲେଖିବାକୁ ବା କହିବାକୁ ଅତୃପ୍ତ ଓ ଅବରୁଦ୍ଧ ଇଚ୍ଛା ରାଜି ନୁହେଁ । ଏହି ଶବ୍ଦଟି କହିଲେ ଓ ଲେଖିଲେ ଯେଉଁ ଭାବ ପ୍ରକାଶିତ ହୁଅନ୍ତା, ସେହି ଭାବଟି ତାହାର ଅବରୁଦ୍ଧ ଇଚ୍ଛାର ଅତି ପ୍ରିୟ କିମ୍ବା ଅତି ଅପ୍ରିୟ । କାହିଁକି ବା କେଉଁ ଅବରୁଦ୍ଧ ଇଚ୍ଛାରୁ ସେ ଉକ୍ତ ଶବ୍ଦ କହିବାକୁ ବା ଲେଖିବାକୁ ଭୁଲିଗଲା, ତାହା ତାହାର ମନକୁ ବିଶ୍ଳେଷଣ କଲେ ଜଣାଯିବ ।

---

## ସପ୍ତମ ପରିଚ୍ଛେଦ

### ଆତ୍ମପ୍ରଣୟ ବିକୃତି (Narcissism)

ନାର୍‌ସିସସ୍ ବୋଲି ଜଣେ ରୂପବାନ୍ ଗ୍ରିକ୍ ଯୁବକ ଥିଲେ । ସେ ନିଜର ରୂପରେ ଏତେଦୂର ମୁଗ୍‌ଧ ହେଉଥିଲେ ଯେ ସେ ଜଳାଶୟରେ ନିଜର ସୁନ୍ଦର ପ୍ରତିବିମ୍ବ ଦର୍ଶନରେ ମୁଗ୍‌ଧ ହୋଇ ଏହି ପ୍ରତିବିମ୍ବକୁ ଚୁମ୍ବନ କରିବାକୁ ଜଳମଧ୍ୟକୁ ଲମ୍ଫ ପ୍ରଦାନ କରି ପ୍ରାଣ ହରାଇଥିଲେ । ପୁରୁଷ ବ୍ୟକ୍ତିହିଁ ସ୍ତ୍ରୀର ପ୍ରେମପ୍ରାର୍ଥୀ ହୁଏ; ନାରସିସସ୍ ଏପରି ରୂପାଭିମାନୀ ଥିଲେ ଯେ ସେ କୌଣସି ସ୍ତ୍ରୀର ପ୍ରେମପ୍ରାର୍ଥୀ ହୋଇ ନ ଥିଲେ; ବରଂ ଜଣେ ଅତି ସୁନ୍ଦରୀ ବାଳିକା ନାରସିସଙ୍କର ପ୍ରେମଭିଖାରିଣୀ ହୋଇ ଶେଷରେ ନୈରାଶ୍ୟରେ ପ୍ରାଣତ୍ୟାଗ କରିଥିଲେ । ଇଂରାଜୀରେ ଯାହାକୁ ନାରସିସମ୍ (Narcissism) କୁହାଯାଏ, ତାହା ଏହି ଗ୍ରିକ୍ ଯୁବକର ନାମରୁ ଆସିଅଛି । ଓଡ଼ିଆରେ ଏହାକୁ ଆତ୍ମପ୍ରଣୟବିକୃତି ବୋଲିଯାଇ ପାରେ ।

ଆତ୍ମପ୍ରଣୟ ବିକୃତିଗ୍ରସ୍ତ ବ୍ୟକ୍ତି ଭୟଙ୍କର ଅହଙ୍କାରୀ ଓ ଗର୍ବୀ । ସେ ନିଜର ମତ, ଯୁକ୍ତି, କଥା ଓ କ୍ରିୟାଦିକୁ ଅଭ୍ରାନ୍ତ ମନେ କରେ; ସେ ଦେଖିବାକୁ ଖୁବ୍ ଅସୁନ୍ଦର ଥିଲେ ମଧ୍ୟ ନିଜକୁ ଖୁବ୍ ସୁନ୍ଦର ମନେ କରେ । ଅତି ସୁନ୍ଦର ଓ ସୁଶ୍ରୀ ବ୍ୟକ୍ତିର ମଧ୍ୟ ସେ ଦୋଷ ଗୁଣି ବାଛି ବସେ । ପ୍ରତ୍ୟେକ ବସ୍ତୁ ତାହାକୁ ହେୟ ବୋଧ ହୁଏ । ଅତି ପରିଷ୍କାର ପୋଷାକ ପିନ୍ଧିଥିଲେ ମଧ୍ୟ ତାହା ଭଲ ଇସ୍ତ୍ରି ହୋଇ ନାହିଁ ବୋଲି ଧୋବାକୁ ଗାଳିଦିଏ । ଅନ୍ୟକୁ ଉପହାସ କରିବା ଓ ବିଦ୍ରୂପ କରିବା ତାହାର ପ୍ରକୃତି; ଅନ୍ୟମାନଙ୍କୁ ଘୃଣା କରିବା-ଦ୍ୱାରାହିଁ ସେ ପ୍ରଫୁଲ୍ଲ ରହି ପାରେ, ନଚେତ୍ ବିଷାଦଗ୍ରସ୍ତ ହୁଏ । ଯଦି

କୌଣସି ଦିନ ସେ କାହାକୁ ଥଟ୍ଟା କରିବାର ସୁଯୋଗ ନ ପାଏ, ତେବେ ସାରା ଦିନଟି ତାର ବିଷାଦରେ କଟିଯାଏ। ସେ ସମସ୍ତଙ୍କୁ ଥଟ୍ଟା କରେ, କିନ୍ତୁ ନିଜେ କାହାରିଠାରୁ ଉପହାସ ବରଦାସ୍ତ କରି ପାରେ ନାହିଁ।

ଆତ୍ମପ୍ରଶଂସୀ କଥା କହିବାବେଳେ କେବଳ ନିଜ ସମ୍ବନ୍ଧରେ ଗପିଯାଏ। ସେ ନିଜର ପ୍ରୌଢ଼ି ଓ ଆତ୍ମଶ୍ଳାଘା କରେ। ସେ ବୁଝି ପାରେ ନାହିଁ ଯେ ତାହାର ପ୍ରୌଢ଼ିକୁ ଶ୍ରୋତାମାନେ ପସନ୍ଦ କରୁ ନାହାନ୍ତି। କେହି ଜଣେ ଶ୍ରୋତା ଯଦି ତାହାକୁ କହିଦିଏ ଯେ ସେ ନିଜର ପ୍ରୌଢ଼ି କରୁଛି, ଆତ୍ମପ୍ରଶଂସୀ ବିରକ୍ତି ଓ କ୍ରୋଧରେ ହତଜ୍ଞାନ ହୋଇଯାଏ। ସେ ବାରମ୍ବାର ନିଜର ପ୍ରୌଢ଼ି ସମ୍ବନ୍ଧରେ ଅନ୍ୟଠାରୁ ଧକ୍କା ଖାଏ ଓ କଟୁ ସମାଲୋଚନାର ସମ୍ମୁଖୀନ ହୁଏ, ତଥାପି ସେ ନିଜର ଆତ୍ମପ୍ରଶଂସା ଛାଡ଼ି ପାରେ ନାହିଁ। ଆତ୍ମପ୍ରଶଂସୀ ଯାହା ଉପରେ ଖୁସି ଥାଏ, ତାହାକୁ ଏକାବେଳକେ ଅଧାସ୍ୱର୍ଗକୁ ପ୍ରଶଂସାରେ ଉଠାଇ ଦିଏ; ଅତିବଡ଼ ମହାତ୍ମାଠାରୁ ମଧ୍ୟ ସେ ତାହାକୁ ଉଚ୍ଚସ୍ଥାନ ଦିଏ; ମାତ୍ର ସେ ଯାହା ଉପରେ ବିରକ୍ତ ହୁଏ, ତାହାକୁ ନିନ୍ଦାରେ ଏକାବେଳକେ ନରକକୁ ଠେଲିଦିଏ। କାଲି ସେ ଯେଉଁ ବ୍ୟକ୍ତିଠାରେ ସକଳ ପ୍ରକାର ସୁଗୁଣ ଦେଖି ପ୍ରଶଂସା କରୁଥିଲା, ଆଜି ଯଦି ସେ ତାହାଠାରେ ବିରକ୍ତ ହୁଏ, ତାହାହେଲେ ସେ ତାହାକୁ ସବୁ ବିଷୟରେ ଅଧମ ବୋଲି ମତ ବ୍ୟକ୍ତ କରେ। ସେ ବଡ଼ ଅବ୍ୟବସ୍ଥିତଚିତ୍ତ, ଏଣୁ ତାହାର କାହାରିକୁ ନିନ୍ଦା କରିବା ବା ପ୍ରଶଂସା କରିବା କ୍ଷଣସ୍ଥାୟୀ ହୁଏ।

ଆତ୍ମପ୍ରଶଂସୀ ନିଜକୁ ସବୁ ବିଷୟରେ ସ୍ଥିରନିଶ୍ଚୟ ( Cock-sure) ମନେ କରେ। ସେ ସମସ୍ତଙ୍କର କାର୍ଯ୍ୟକଳାପକୁ ସମାଲୋଚନା

କରି ତାହିଁରେ ଅଯଥା ହସ୍ତକ୍ଷେପ କରେ । ସେ କାହାରିକୁ କୌଣସି କାର୍ଯ୍ୟ କରିବାର ସୁବିଧା ସୁଯୋଗ ଦିଏ ନାହିଁ, ଅଥଚ ନିଜେ ବି ଏହି କାର୍ଯ୍ୟକୁ ତୁଲାଇ ପାରେ ନାହିଁ । ସେ କାହାରି ମତ ବା ଯୁକ୍ତିକୁ ଗ୍ରହଣ କରେ ନାହିଁ; ନିଜେ ଯେଉଁ ମତ ପୋଷଣ କରେ, ତାହାକୁହିଁ ବେଦର ଗାର ମନେ କରେ । ତାହାର ସ୍ୱେଚ୍ଛାଚାରିତାରେ ସମସ୍ତେ ବ୍ୟତିବ୍ୟସ୍ତ ଓ ବିଚଳିତ ହୋଇ ଗୁପ୍ତ ବା ପ୍ରକାଶ୍ୟ ଭାବରେ ବିଦ୍ରୋହୀ ହୁଅନ୍ତି । ସେ ତାହାର ନିମ୍ନ ସ୍ତରର କର୍ମଚାରୀମାନଙ୍କୁ କୌଣସି ପ୍ରକାର ଅବସର ଦିଏ ନାହିଁ, ଅଥଚ ନିଜେ ଆଳସ୍ୟରେ ଓ କଥାବାର୍ତ୍ତାରେ କାଳକ୍ଷେପଣ କରେ । ସାମାନ୍ୟ ଅପମାନ ବୋଧ କଲେ ମଧ୍ୟ ଆତ୍ମପ୍ରଣୟୀର ସର୍ବପ୍ରକାର ବୁଦ୍ଧିଶୁଦ୍ଧି ଲୋପ ହୋଇଯାଏ; ସେ ଅବସନ୍ନ, ବିରକ୍ତ ବା ଉନ୍ମତ୍ତ ହୋଇ ଉଠେ; ସହସା କୌଣସି ଗୋଟାଏ ଅସାଧାରଣ କ୍ରିୟା ପ୍ରକାଶ କରି ସେ ଜଟିଳ ସମସ୍ୟାର ସୃଷ୍ଟି କରେ ।

ଆତ୍ମପ୍ରଣୟବିକୃତି ପ୍ରଧାନତଃ ଚାରି ଶ୍ରେଣୀର । ଯଥା—ରୂପାଭିମାନ, ଧନାଭିମାନ, ବିଦ୍ୟାଭିମାନ ଓ ଜାତ୍ୟଭିମାନ । ରୂପାଭିମାନ ଆତ୍ମପ୍ରଣୟବିକୃତି ବେଶୀ ଛାତ୍ରାବସ୍ଥାରେ ଦେଖାଯାଏ । ଏହି ବିକୃତି ୧୩।୧୪ ବର୍ଷ ବୟସରୁ ୨୪।୨୫ ବର୍ଷ ବୟସ ପର୍ଯ୍ୟନ୍ତ ସ୍ଥାୟୀ ହୁଏ । ଏହି ବିକୃତିର ବାଳକବାଳିକାମାନେ ଦୀର୍ଘ ସମୟ ଧରି ଦର୍ପଣରେ ନିଜ ମୁଖର ପ୍ରତିବିମ୍ବ ଦେଖି ତାହିଁରେ ମୁଗ୍ଧ ହୁଅନ୍ତି; ମୁଣ୍ଡର କେଶବିନ୍ୟାସରେ ସେମାନଙ୍କର ଅନେକ ସମୟ ଅତିବାହିତ ହୁଏ; ପୁସ୍ତକପାଠ କରୁ କରୁ ମଝିରେ ମଝିରେ ଦର୍ପଣରେ ମୁହଁ ଦେଖିବାର ଲାଳସା ସେମାନେ ଛାଡ଼ି ପାରନ୍ତି ନାହିଁ । ଏହି ବିକୃତିଗ୍ରସ୍ତ ବ୍ୟକ୍ତି ମୁଖରେ ପାଉଡର, ସ୍ନୋ ଇତ୍ୟାଦି ମାଖି ତାହାକୁ ଉଜ୍ଜ୍ୱଳ କରେ; ମୁଖରେ ଗୋଟାଏ ବ୍ରଣ ଦେଖାଯିବା କ୍ଷଣି ତାହିଁରେ ବିପଦ ଗଣେ,

କାଳେ ତାହାର ମୁଖ ଅନ୍ୟକୁ ଅସୁନ୍ଦର ଦେଖାଯିବ । ମୁଣ୍ଡ ବାହାରୁଥିବା ଦାଢ଼ି ଓ ନିଶକୁ ଅନ୍ୟର ଅସାକ୍ଷାତରେ ସେ ଉପାଡ଼ି ପକାଏ । ୨୦ । ୨୨ ବର୍ଷ ବୟସର ବାଳକ ବା ବାଳିକା ନିଜକୁ ୧୫ । ୧୬ ବର୍ଷ ବୟସର ବୋଲି ପରିଚିତ କରାଇବାକୁ ଚେଷ୍ଟା କରେ । ବୟସକୁ ଗୋପନ କରି ନିଜକୁ ଅଳ୍ପ ବୟସର ବୋଲି ପ୍ରକାଶ କରିବା ରୂପାଭିମାନ ବିକୃତିଗ୍ରସ୍ତର ଗୋଟିଏ ପ୍ରଧାନ ଲକ୍ଷଣ । ଏହି ବିକୃତି ଯୌନଜୀବନରେ ଗୋଟିଏ ବଡ଼ ଅନ୍ତରାୟ । ଏହାଦ୍ୱାରା ସ୍ୱାସ୍ଥ୍ୟ, ମାନସିକ ଶକ୍ତି, ସ୍ମୃତି ଓ ବୁଦ୍ଧି ଇତ୍ୟାଦି ନଷ୍ଟ ହୋଇଯାଏ । ସ୍କୁଲର ବିଭିନ୍ନ ସମସ୍ୟା ମଧ୍ୟରେ ରୂପାଭିମାନ-ବିକୃତିଜାତ ଆଚରଣମାନ ପ୍ରଧାନତମ ସମସ୍ୟା । ଯାବତୀୟ ନୈତିକ ଅଧୋଗତି, ଶିକ୍ଷକବିଦ୍ରୋହୀ ଓ ସମାଜବିଦ୍ରୋହୀ ଆଚରଣମାନ ଏହାର ମୂଳରେ ରହିଅଛି ।

ରୂପାଭିମାନ ବିକୃତିଗ୍ରସ୍ତ ବ୍ୟକ୍ତି ନିଜକୁ ଏତେ ସୁନ୍ଦର ମନେ କରେ, ଯେ ତାହାର ବୈବାହିକ ଜୀବନ କଦାପି ସୁଖମୟ ହୁଏ ନାହିଁ । ଅହଙ୍କାରୀ ଓ ରୂପୋନ୍ମତ୍ତ ସ୍ତ୍ରୀ ପ୍ରତ୍ୟେକ ପୁରୁଷକୁ କଦାକାର, କୁରୂପ ଓ ନିଜର ଅଯୋଗ୍ୟ ମନେ କରେ; ଅହଙ୍କାରୀ ଓ ରୂପୋନ୍ମତ୍ତ ପୁରୁଷ କୌଣସି ସ୍ତ୍ରୀର ବଶ ହୁଏ ନାହିଁ; ସେ ଚାହେଁ ବିଶ୍ୱର ପ୍ରତ୍ୟେକ ସ୍ତ୍ରୀ ତାହାର ସୌନ୍ଦର୍ଯ୍ୟରେ ବିମୋହିତା ହୋଇ ତାହାକୁ ଅନୁସରଣ କରନ୍ତୁ । ରୂପାଭିମାନୀ ପୁରୁଷ ସୁନ୍ଦରୀ ବାଳିକାର ରୂପ ଦେଖି ମନେ ମନେ ମୁଗ୍ଧ ହୁଏ, ମାତ୍ର ନିଜର ଅହଙ୍କାର ଓ ରୂପୈଶ୍ୱର୍ଯ୍ୟ ହେତୁରୁ ତାହାକୁ ପ୍ରେମପ୍ରାର୍ଥନା କରେ ନାହିଁ । ବାସର ରଜନୀରେ ରୂପାଭିମାନୀ ପୁରୁଷ ନବବଧୂକୁ ପ୍ରେମ କଥା ଶୁଣାଏ ନାହିଁ, ବାସର ପ୍ରକୋଷ୍ଠରେ ସେ ବ୍ୟଙ୍ଗ-

ନିଦ୍ରାରେ ନିଦ୍ରିତ ହୁଏ। ଏହିପରି ପୁରୁଷର ନିର୍ବିବାହିତା ସ୍ତ୍ରୀ ସହଜରେ ହିଷ୍ଟିରିଆ ରୋଗଗ୍ରସ୍ତ ହୁଏ।

ଧନାଭିମାନବିକୃତିଗ୍ରସ୍ତ ବ୍ୟକ୍ତି ଧନଗର୍ବରେ ମତୁଆଲ ହୋଇ ଧରାକୁ ସରାଜ୍ଞାନ କରେ। ସେ ଗରିବଙ୍କୁ ଘୃଣା ଓ ହେୟ ଜ୍ଞାନ କରେ। ଛାତ୍ର ଏହି ବିକୃତିଗ୍ରସ୍ତ ହେଲେ ସେ ଗରିବ ସହପାଠୀଙ୍କୁ ଘୃଣା ଓ ଅବଜ୍ଞା କରେ; ଗର୍ବ ଓ ଅହଙ୍କାର ହେତୁ ସେ ଶିକ୍ଷକଙ୍କ ଆଦେଶକୁ ମଧ୍ୟ ଅମାନ୍ୟ କରେ। ଏହି ବିକୃତିଗ୍ରସ୍ତ ଛାତ୍ରମାନେ ବିଦ୍ୟାଳୟରେ ବେଶୀ ଆଗେଇ ପାରନ୍ତି ନାହିଁ। ରୂପାଭିମାନ, ଧନାଭିମାନ, ଜାତ୍ୟଭିମାନ ବା ବିଦ୍ୟାଭିମାନ ଏହି ଚାରିପ୍ରକାର ଆତ୍ମପ୍ରଣୟ-ବିକୃତିରୁ କୌଣସି ଗୋଟିକର କବଳରେ ପଡ଼ିଲେ ଛାତ୍ରର ସକଳ ପ୍ରକାର ଅନୁସନ୍ଧିତ୍ସା (Desire to know) ଲୋପ ହୋଇଯାଏ। କାରଣ ଜାଣିବା ପାଇଁ ଇଚ୍ଛା ନ ଥିଲେ ଛାତ୍ରର କଦାପି ଜ୍ଞାନ ହୁଏ ନାହିଁ। ଏହି ଜାଣିବାର ଇଚ୍ଛା ବା ଅନୁସନ୍ଧିତ୍ସା ଛାତ୍ରର ପଠନଶାରେ ସବୁଠାରୁ ବଡ଼ ଉପାଦାନ। ଆତ୍ମପ୍ରଣୟବିକୃତି ଛାତ୍ରକୁ ଅହଙ୍କାରୀ ଓ ସର୍ବଜ୍ଞାନ୍ତା ମନୋବୃତ୍ତିବିଶିଷ୍ଟ କରିଦିଏ। ଅହଙ୍କାର ଓ ଅନୁସନ୍ଧିତ୍ସା ଏ ଯୋଡ଼ିକ ପରସ୍ପରବିରୋଧୀ। ଅହଙ୍କାର ହୃଦୟରେ ସ୍ଥାନ ପାଇଲେ ଅନୁସନ୍ଧିତ୍ସା ଲୁପ୍ତ ହୁଏ ଏବଂ ଅନୁସନ୍ଧିତ୍ସୁ ହେବାକୁ ପଡ଼ିଲେ ଅହଙ୍କାରକୁ ସମ୍ପୂର୍ଣ୍ଣ ଧ୍ୱଂସ କରିବାକୁ ହୁଏ।

ବିଦ୍ୟାଭିମାନୀ-ବିକୃତିଗ୍ରସ୍ତ ବ୍ୟକ୍ତି ନିଜକୁ ପଣ୍ଡିତ ମନେ କରେ। ସେ କାହାର ଉପଦେଶ ବା ନିର୍ଦ୍ଦେଶ ଗ୍ରହଣ କରେ ନାହିଁ। ନିଜର କଥା ଓ ଯୁକ୍ତିକି ସେ ଅକାଟ୍ୟ ଓ ଅଭ୍ରାନ୍ତ ମନେ କରେ। ଶିକ୍ଷକ ପଢ଼ାଉଥିବାବେଳେ ବିଦ୍ୟାଭିମାନୀ ଛାତ୍ର ଅବଜ୍ଞାରେ ଅମନୋଯୋଗୀ ହୁଏ; ଶିକ୍ଷକ ଯାହା ପଢ଼ାଉଥାନ୍ତି ସେ ମନେ କରେ

ଯେ ଏହା ସେ ବହୁତ ଦିନ ଆଗରୁ ଜାଣିଅଛି; ଏଣୁ ସେ ପୁଣି ସେହି ଚର୍ବିତଚର୍ବଣ ପ୍ରତି ମନ ଦିଏ ନାହିଁ । ସେ ସର୍ବଜ୍ଞାନ୍ତା ବୋଲି ନିଜକୁ ଦେଖାଇ ହୁଏ । ବକ୍ତା କିଛି ଆରମ୍ଭ କଲାମାତ୍ରେ ବିଦ୍ୟା-ଭିମାନୀ କହିପକାଏ, "ଥାଉ ଥାଉ, ଏ'ସବୁ ବିଷୟ ମୋତେ ତୁମଠାରୁ ବେଶୀ ଜଣା ଅଛି ।" ବନ୍ଧୁ ମେଳରେ ଯୁକ୍ତିତର୍କ ହେଉଥିଲା ବେଳେ ବିଦ୍ୟାଭିମାନୀ ନିଜକୁ ମୁଖର ଓ ବାବଦୁକ ମନେ କରେ ।

ଜାତ୍ୟଭିମାନୀ ନିଜକୁ ସତ୍‌କୁଳଜାତ ଓ କୁଳୀନ ବୋଲି ମନେ କରେ । ସେ ନିଜ ଛଡ଼ା ଅନ୍ୟ ସମସ୍ତଙ୍କୁ ନୀଚକୁଳଜାତ ବୋଲି ଅବଜ୍ଞା କରେ । ଏହି ବ୍ୟକ୍ତିମାନେ ଛୁଆଁଛୁତ, ସ୍ପୃଶ୍ୟାସ୍ପୃଶ୍ୟ ସମ୍ବନ୍ଧରେ ବେଶୀ ବାଛନ୍ତି । ଏମାନେ ନିଜ ଜାତିର ଲୋକଙ୍କ ଛଡ଼ା ଅନ୍ୟଠାରୁ ଜଳସ୍ପର୍ଶ ଓ ଖାଦ୍ୟଗ୍ରହଣ କରନ୍ତି ନାହିଁ । ଏମାନେ କାୟିକ ଶ୍ରମକୁ ଘୃଣା କରନ୍ତି; ଗୃହମାର୍ଜନ ଓ ପଥମାର୍ଜନ ପ୍ରଭୃତି ବିଶେଷ ବିଶେଷ କାର୍ଯ୍ୟକୁ ଅପବିତ୍ର ଓ ଅସ୍ପୃଶ୍ୟ ବୋଲି ମନେ କରନ୍ତି । କେବଳ ଜାତ୍ୟଭିମାନୀ ବ୍ୟକ୍ତି କାହିଁକି, ପ୍ରତ୍ୟେକ ଶ୍ରେଣୀର ଆତ୍ମପ୍ରଶଂସୀ କାୟିକ ଶ୍ରମକୁ ଘୃଣା କରେ ।

ରୂପାଭିମାନୀ ବ୍ୟକ୍ତି ଏତେ ଅହଙ୍କାରୀ ଯେ ସେ ତାହାର ରମଣେଚ୍ଛାର ତୃପ୍ତି ପାଇଁ କାହାରିଠାରେ ପ୍ରେମଯାଚ୍ଞା କରିବାକୁ ଅପମାନକର ବୋଧ କରେ; ଏଣୁ ବାଧ୍ୟ ହୋଇ ସେ ହସ୍ତମୈଥୁନାଦି ଆତ୍ମଲିଙ୍ଗୀ ଆଚରଣରେ (Autosexual behaviours) ନିଜକୁ ବ୍ୟାପୃତ ରଖେ ।

**ଦେଖାଇ ହେବା ବିକୃତି** (Exhibitionist tendency):—ଆତ୍ମପ୍ରଶଂସୀ ବିକୃତିଗ୍ରସ୍ତ ବ୍ୟକ୍ତି ନିଜକୁ ନାନା ଭାବରେ ଦେଖାଇ ହୁଏ । ରୂପାଭିମାନୀ ଯୁବକ ଓ ଯୁବତୀମାନେ ନିଜ ନିଜର ଗୋପନ

ଓ ଅବୃତ ଅଙ୍ଗ ପ୍ରଦର୍ଶନ କରି ଦର୍ଶକମାନଙ୍କଠାରେ ଭାବାନ୍ତର ଲକ୍ଷ୍ୟ କରନ୍ତି । ଏହି ଶ୍ରେଣୀର ଯୁବକ ଯୁବତୀମାନେ ନିଜ ନିଜର ଲଜ୍ଜାକୁ ଘୋଡ଼ାଇବା ପାଇଁ ପରିଚ୍ଛଦ ପରିଧାନ କରନ୍ତି ନାହିଁ; ପକ୍ଷାନ୍ତରେ ନିଜ ନିଜର ସମୁନ୍ନତ ପୟୋଧର ଓ ଜଘନଦେଶକୁ ଦର୍ଶକମାନଙ୍କର ଦୃଷ୍ଟି ଆକର୍ଷଣ କରିବାକୁ ଅତି ସୂକ୍ଷ୍ମ ପରିଚ୍ଛଦ ବ୍ୟବହାର କରନ୍ତି । ସିନେମା, ନାଟ୍ୟଶାଳାଦିରେ ନର୍ତ୍ତକ ନର୍ତ୍ତକୀ-ମାନେ ଅର୍ଦ୍ଧନଗ୍ନଭାବରେ ଅବତୀର୍ଣ୍ଣ ହୁଅନ୍ତି ।

ବାର୍ଦ୍ଧକ୍ୟର କୌଣସି ପ୍ରକାର ଚିହ୍ନ ଦେଖାଗଲେ ଆତ୍ମପ୍ରଣୟୀ ଆତଙ୍କ ଗଣେ । ମସ୍ତକରେ ପକ୍ୱକେଶ ଦେଖାଗଲେ ସେ ଦବାନଳି ପ୍ରମାଦ ଗଣେ, କଲପ ବ୍ୟବହାର କରେ କିମ୍ବା ଶୁଭ୍ର କେଶଗୁଡ଼ିକୁ ଗୋଟି ଗୋଟି କରି ଉପାଡ଼ି ପକାଏ । ଦାନ୍ତ ହଲିବାର ଉପକ୍ରମ ହେଲେ ସେ ଦନ୍ତଚିକିତ୍ସକ ନିକଟକୁ ଧାଉଁଡ଼ି ଦିଏ ଏବଂ କୃତ୍ରିମ ଦନ୍ତ ଲଗାଏ । ଚର୍ମ ଲୋଳିତ ହେବାର ଉପକ୍ରମ ହେଲାକ୍ଷଣି ସେ ସର୍ବଦା ନିଜର ସର୍ବାଙ୍ଗ ଆବୃତ କରେ । ୫୦ ବର୍ଷ ବୟସର ପ୍ରୌଢ଼ ବ୍ୟକ୍ତି ନିଜକୁ ୨୫-୩୦ ବର୍ଷ ବୟସର ଯୁବାବ୍ୟକ୍ତି ପରି ପରିଚୟ ଦିଏ ଏବଂ ତାଦୃଶ ହାବଭାବ ପ୍ରକାଶ କରେ । ଜଣେ ଚାଳିଶ ପଇଁଚାଳିଶ ବର୍ଷ ବୟସର ଆତ୍ମପ୍ରଣୟୀ ବ୍ୟକ୍ତିକୁ ଲକ୍ଷ୍ୟ କର; ଦେଖିବ ଏହାର କେଶ-ଗୁଡ଼ିକ ଘନକୃଷ୍ଣ, ଦାନ୍ତଗୁଡ଼ିକ ସୁନ୍ଦର, ସ୍ୱଚ୍ଛ, ଉଜ୍ଜ୍ୱଳ । ମାତ୍ର ଟିକିଏ ଭିତରେଇ ଦେଖିଲେ ଜଣାଯିବ ଯେ, ତାହାର କେଶଗୁଡ଼ିକ ପ୍ରକୃତରେ ବହୁତ ପରି ଧଳା ହୋଇ ଯାଇଛି । ଏହି ଧଳା କେଶରେ ସେ ପ୍ରତି ୮।୫ ଦିନରେ ରଙ୍ଗ ମାରି ତାହାକୁ କଳା ରଖେ; ତାହାର ପାଟିରେ ଗୋଟିଏ ହେଲେ ଦାନ୍ତ ନାହିଁ, ତାହାର ଶୁଭ୍ର ସୁନ୍ଦର ଦାନ୍ତଗୁଡ଼ିକ ପ୍ରକୃତରେ କୃତ୍ରିମ; ଏହି ଦାନ୍ତଗୁଡ଼ିକ ମୁଖରୁ ବାହାର କରି ପାଣିଲେ ଏବଂ ଗୋଟିଏ ସପ୍ତାହ ସେ ମୁଣ୍ଡରେ କଳାରଙ୍ଗ

ନ ଲଗାଇଲେ ଉକ୍ତ ବ୍ୟକ୍ତିର ପ୍ରକୃତ ବୟସ ଯେ ଷାଠିଏରୁ ଊଣା ନୁହେଁ, ଏହା କେହି କେହି କହିବ। ବର୍ତ୍ତମାନ ଅଣ୍ଡି ବୁଢ଼ା ଦୁଧ ପିଇବା ଭଳି ଏହି ବ୍ୟକ୍ତିମାନେ ଜରା ଓ ମୃତ୍ୟୁର ଅବଶ୍ୟମ୍ଭାବିତା ସ୍ୱୀକାର କରନ୍ତି ଏବଂ ଜରା ଓ ମୃତ୍ୟୁକୁ ଏଡ଼ି ଲୁଚିବାକୁ ଚେଷ୍ଟା କରନ୍ତି—ମାତ୍ର ବୃଥା ଏମାନଙ୍କର ଚେଷ୍ଟା।

**ଗୌଣମନୋବୃତ୍ତି** (Inferiority Complex):—ଏହା ମଧ୍ୟ ଏକ ପ୍ରକାର ଅସ୍ୱାଭାବିକ ବିକାର। ଗୌଣମନୋବୃତ୍ତିଗ୍ରସ୍ତ ବ୍ୟକ୍ତି ମନେ କରେ ଯେ ତାହାକୁ କେହି ପସନ୍ଦ କରୁ ନାହାନ୍ତି। ସେ ମନେକରେ, ତାହାର ରୂପ ଓ ସୌନ୍ଦର୍ଯ୍ୟ ଅତୁଳନୀୟ; ତଥାପି କେହି କାହିଁକି ତାହାଠାରେ ପ୍ରେମପ୍ରାର୍ଥୀ ହୁଅନ୍ତି ନାହିଁ? ସେ ନିଜକୁ ସବୁଠାରୁ ବିଦ୍ୱାନ୍ ଓ ବୁଦ୍ଧିମାନ୍ ମନେ କରେ, ତଥାପି ତାହାର ସନ୍ଦେହ ଓ ଆଶଙ୍କା ହୁଏ ଯେ ତାହାକୁ ସମସ୍ତେ ମୂର୍ଖ ଓ ବୋକା ବୋଲି ଭାବୁଛନ୍ତି। ଗୌଣମନୋବୃତ୍ତିଗ୍ରସ୍ତ ବ୍ୟକ୍ତି ଏପରି ଆଚରଣ ପ୍ରକାଶ କରେ, ଯାହାଦ୍ୱାରା କି ସେ ଶ୍ରୋତା ଓ ଦ୍ରଷ୍ଟାମାନଙ୍କର ଦୃଷ୍ଟି ଆକର୍ଷଣ କରି ସେମାନଙ୍କ ଭିତରେ ବଡ଼ (Conspicious) ହେବାକୁ ଚାହେଁ। ବକ୍ତା ବକ୍ତୃତା ଦେବାବେଳେ ଶ୍ରୋତାମାନଙ୍କ ମଧ୍ୟରୁ କେହି କେହି ପ୍ରଶ୍ନ ପଚାରି ନିଜର ଅସ୍ତିତ୍ୱ ଓ ବଡ଼ପଣ ପ୍ରଚାର କରନ୍ତି; ଏହାଦ୍ୱାରା ସମସ୍ତଙ୍କର ଦୃଷ୍ଟି ବକ୍ତାଠାରୁ ଫେରିଯାଇ ପ୍ରଶ୍ନକର୍ତ୍ତାଙ୍କଠାରେ ନିବଦ୍ଧ ହୁଏ। କ୍ଲାସରେ ଶିକ୍ଷକ ପଢ଼ାଇବା-ବେଳେ ଜଣେ ଜଣେ ଛାତ୍ର ବାରମ୍ବାର ପ୍ରଶ୍ନ କରନ୍ତି। ଏପରି ପ୍ରଶ୍ନ କରିବାରେ ସେମାନଙ୍କର ଜାଣିବାର ଇଚ୍ଛା ନ ଥାଏ, ମାତ୍ର ଗୌଣମନୋବୃତ୍ତି ହେତୁ ସମସ୍ତଙ୍କର ଦୃଷ୍ଟି ସେମାନଙ୍କଠାକୁ ଆକୃଷ୍ଟ କରିବାର ଗୋଟାଏ ତୀବ୍ର ଇଚ୍ଛା ସେମାନଙ୍କର ଥାଏ। ଛାତ୍ର ଅଜାଣତ ଭାବରେ (unconsciously) ଅନୁଭବ କରେ ଯେ

ତାହାକୁ ସମସ୍ତେ ତାଚ୍ଛଲ୍ୟ ( ignore ) କରୁଛନ୍ତି । ଏଣୁ ନିଜର ସଙ୍ଗୀକୁ ଚିମୁଟିବା ଦ୍ୱାରା ବା ଶିକ୍ଷକଙ୍କୁ କୌଣସି ପ୍ରଶ୍ନ ପଚାରିବା ଦ୍ୱାରା ବା ସେହିପରି ଅନ୍ୟ କିଛି ଦର୍ଶନୀୟ ଆଚରଣ ପ୍ରକାଶ କରିବା ଦ୍ୱାରା ସେ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରେ ।

ଜାତି ବା ସମ୍ପ୍ରଦାୟ ଗୌଣମନୋବୃତ୍ତିଗ୍ରସ୍ତ ହେଲେ ଯୁଦ୍ଧ ଓ ସାମ୍ପ୍ରଦାୟିକ ଦଙ୍ଗାହାଙ୍ଗାମା ଘଟେ । ବିଗତ ଊନବିଂଶ ଶତାବ୍ଦୀରେ ଜର୍ମାନି ଓ ଯାପାନର ଉତ୍ଥାନ ଘଟିଥିଲା; ମାତ୍ର ଜର୍ମାନ ଓ ଯାପାନ ଜାତିର ଉତ୍ଥାନ ପରେ ଯେତେବେଳେ ଦେଖାଗଲା ଯେ ସେମାନଙ୍କ ପାଇଁ କୌଣସି ସାମ୍ରାଜ୍ୟ ବା ବଜାର ନାହିଁ, ଏହାହିଁ ସେମାନଙ୍କର ଗୌଣମନୋବୃତ୍ତି ସୃଷ୍ଟି କରିଥିଲା । ଏହି ଗୌଣବୃତ୍ତି ଓ ସାମ୍ରାଜ୍ୟ-ଲିପ୍ସା ସେମାନଙ୍କୁ ସମରାଭିମୁଖୀ କରିଥିଲା । ଭାରତୀୟ ମୁସଲମାନ୍ ସମ୍ପ୍ରଦାୟ ସଂଖ୍ୟାଲଘିଷ୍ଠ ଥିବାରୁ ସେମାନଙ୍କର ଆଶଙ୍କା ଯେ ସେମାନେ ହିନ୍ଦୁମାନଙ୍କ ଦ୍ୱାରା ଉତ୍ପୀଡ଼ିତ ହେବେ । ପାକିସ୍ଥାନରେ ବର୍ତ୍ତମାନ ଚାଲିଥିବା ବୀଭତ୍ସ ସାମ୍ପ୍ରଦାୟିକ ହତ୍ୟାକାଣ୍ଡ ଓ ଲୁଣ୍ଠତରାଜ ମୂଳରେ ଏହି ଆଶଙ୍କାହିଁ ରହିଅଛି ।

ଫ୍ରଏଡ଼ଙ୍କ ମତରେ ଅତି ଶୈଶବକାଳରେ ଗୌଣ ମନୋବୃତ୍ତିର ମୂଳଦୁଆ ତିଆରି ହୁଏ । ପରିବାରରେ କୌଣସି ନୂତନ ଶିଶୁର ଆବିର୍ଭାବ ହେଲେ ଅନ୍ୟାନ୍ୟ ସନ୍ତାନମାନେ ଜନନୀଦ୍ୱାରା କିଛିଦିନ ପାଇଁ ଅନାଦୃତ ହୁଅନ୍ତି । ଏହି ଜ୍ଞାନହୀନ ଶିଶୁମାନେ ନୂତନ ଆବିର୍ଭୂତ ଶିଶୁକୁ ଆଶଙ୍କା ଓ ସନ୍ଦେହଚକ୍ଷୁରେ ଦେଖନ୍ତି । ଯଦି ପିତାମାତାଙ୍କର ଗୋଟିଏ ସନ୍ତାନ ଥାଏ, ଏହି ପିଲାଟି ବାପ ମାଆଙ୍କର ଅଖଣ୍ଡ ସ୍ନେହ ଉପଭୋଗ କରେ, ମାତ୍ର ଆଉ ଗୋଟିଏ ସନ୍ତାନର ଆବିର୍ଭାବ ହେଲାକ୍ଷଣି ପିତାମାତାଙ୍କର ବାତ୍ସଲ୍ୟ ବିଭକ୍ତ ହୋଇଯାଏ ।

ନୂଆ ଶିଶୁଟିଲାଗି ନୂଆ ନୂଆ ଖେଳନା ଏ ନୂଆ ନୂଆ ଖାଦ୍ୟର ଅପ୍ରୟୋଜନ ହୁଏ ; ବଡ଼ ଶିଶୁ ଏହାକୁ ସମର୍ଥନ ଦୃଷ୍ଟିରେ ଦେଖେ ନାହିଁ । ଗୋଟିଏ ପରିବାରରେ ଅନେକ ଗୁଡ଼ିଏ ବାଳକ ବାଳିକା ରହୁଥିଲେ ଦୁର୍ବଳ ବାଳକ ବାଳିକାମାନେ ଗୌଣ ମନୋବୃତ୍ତିଗ୍ରସ୍ତ ହୁଅନ୍ତି । ବଳିଷ୍ଠ ଭାଇ ବା ଭଉଣୀ ନାନା ଭାବରେ ଦୁର୍ବଳ ଭାଇ ଭଉଣୀଙ୍କ ଉପରେ ଅତ୍ୟାଚାର କରନ୍ତି; ଏହାର ଫଳରେ ଦୁର୍ବଳ ବାଳକ ବାଳିକାମାନେ ଆତ୍ମନିର୍ଭରଶୀଳତା ହରାଇ ପିତା-ମାତାଙ୍କ ଉପରେ ନିର୍ଭର କରି ସେମାନଙ୍କଠାରୁ ସାହାଯ୍ୟ ଚାହାନ୍ତି ।

ଆତ୍ମପ୍ରଶଂସୀର ଅନୁଭୂତ ଦଗଧା ଖୁବ୍ ବେଶୀ; ଏଣୁ ସେ କଳ୍ପନାଜଳ୍ପନା କରେ, ଦିବାସ୍ୱପ୍ନ ଦେଖେ ଓ ଆକାଶସୌଧ ଗଢ଼େ । ସେ ଜିଦିଖୋର, ମାତ୍ର ତାହାର ଚେଷ୍ଟାଶକ୍ତି (willforce) ଖୁବ୍ କମ୍ । ଏଣୁ ଆତ୍ମପ୍ରଶଂସୀ ସଂସାରକ୍ଷେତ୍ରରେ ସାଫଲ୍ୟଲାଭ କରି ପାରେ ନାହିଁ । ସେ ବଡ଼ ସ୍ୱାର୍ଥପର ଥିବାରୁ ତାହାର ପାରିବାରିକ ତଥା ଦାମ୍ପତ୍ୟ ଜୀବନ ଅଶାନ୍ତିମୟ ହୁଏ । ଆତ୍ମପ୍ରଶଂସୀର ( Egotist ) ପ୍ରତିବେଶୀ ସୌହାର୍ଦ୍ଦ୍ୟ ( Neighbourly feeling ) ଜମାରୁ ନ ଥାଏ । କୌଣସି ପଡ଼ୋଶୀ ସହିତ ତାହାର ପଟେ ନାହିଁ । ଜୀବନ ସାରା ସେ ପଡ଼ୋଶୀଙ୍କ ବିରୁଦ୍ଧରେ ମାଲିମକଦ୍ଦମା ବା କଳି ତକରାର କରେ । ସାରା ଜୀବନ ତାହାକୁ ପଡ଼ୋଶୀମାନେ ଏକଘରକିଆ କରି ରଖନ୍ତି ।

ଆତ୍ମବିଶ୍ଳେଷଣ ପ୍ରକ୍ରିୟାରେ ( By Psycho-analysis) ସର୍ବପ୍ରକାର ମାନସିକ ବିକୃତିକୁ ସଜାଡ଼ାଯାଇ ପାରେ ବୋଲି

ଫ୍ରଏଡ଼ଙ୍କ ମତ । ମାତ୍ର ଆତ୍ମପ୍ରଣୟ ବିକୃତି ଓ ତଜ୍ଜାତ ଅହଙ୍କାରକୁ ନିରାକରଣ କରାଯାଇ ପାରିବ ନାହିଁ ବୋଲି ଫ୍ରଏଡ଼ ଏବଂ ଅନ୍ୟାନ୍ୟ ମନସ୍ତତ୍ତ୍ୱଜ୍ଞ ପଣ୍ଡିତଙ୍କ ମତ । ଆତ୍ମପ୍ରଣୟବିକୃତି ଆଜିକାଲି ସ୍କୁଲର ପ୍ରଧାନ ସମସ୍ୟା ।



## ଅଷ୍ଟମ ପରିଚ୍ଛେଦ

## ପିତା ବା ମାତାଠାରେ ଆସକ୍ତି

## (Father Complex and Mother Complex)

ସାଧାରଣ ସୁସ୍ଥ ସବଳ ଶିଶୁପୁତ୍ର ମାତାକୁ ପିତାଠାରୁ ବେଶୀ ସ୍ନେହ କରେ। ମାତ୍ର ସୁସ୍ଥ ଶିଶୁକନ୍ୟା ମାତାଠାରୁ ପିତାକୁ ବେଶୀ ସ୍ନେହ କରେ। ଫ୍ରଏଡ଼ଙ୍କ ମତରେ ଏହାହିଁ ସାଧାରଣ ନିୟମ। ଶୈଶବରେ ଶିଶୁପୁତ୍ର ମାତାକୁ ପିତାଠାରୁ ଅଧିକ ସ୍ନେହ କରିଥିବାରୁ ପ୍ରଥମ ଯୌବନର ସମଲିଙ୍ଗୀ ସ୍ତରକୁ ( Homo Sexual Stage ) ଅତିକ୍ରମ କରି ସେ ଉନ୍ନତତମ ବିଷମଲିଙ୍ଗୀ ଅବସ୍ଥାରେ ପହଞ୍ଚି ପାରେ ଏବଂ ରମଣୀ ପ୍ରତି ଆକୃଷ୍ଟ ହୁଏ। ଶିଶୁକନ୍ୟା ପିତାକୁ ମାତାଠାରୁ ଅଧିକ ସ୍ନେହ କରିଥିବାରୁ ଯୌବନରେ ସେ ପୁରୁଷର ପ୍ରଣୟପାଶରେ ଆବଦ୍ଧ ହୋଇ ପାରେ।

ମାତ୍ର ଶିଶୁପୁତ୍ରର ମାତା ପ୍ରତି ଶୈଶବରେ ଅତ୍ୟଧିକ ଆସକ୍ତି ଘଟିଥିଲେ ଯୌବନରେ ସେ ଏହି ଆସକ୍ତିବନ୍ଧକୁ ଅତିକ୍ରମ କରି ପାରେ ନାହିଁ। ନବପରିଣୀତା ସ୍ତ୍ରୀଠାରେ ସେ ତାହାର ଜନନୀର ଗୁଣମାନଙ୍କର ଅଭାବ ଦେଖି ଝୁରି ହୁଏ; ସ୍ତ୍ରୀର ଆଚରଣମାନଙ୍କୁ ଲକ୍ଷ୍ୟ କରି ସେ ଜନନୀର ଅତୀତ ସ୍ନେହମୟ ଆଚରଣ ସଙ୍ଗରେ ତୁଳନା କରି ଆକାଶ ପାତାଳ ପ୍ରଭେଦ ଦେଖେ। ସେ ତାହାର ସ୍ତ୍ରୀଠାରେ କୌଣସି ପ୍ରକାର ସ୍ନେହ ଉପଲବ୍ଧି କରି ପାରେ ନାହିଁ। ତାହାର ବୈବାହିକ ଜୀବନ ବିଷମୟ ହୋଇଯାଏ। ଶୈଶବରେ ନିଜର ପିତାଠାରେ ଅତ୍ୟଧିକ ଆସକ୍ତି ଥିବା ସ୍ତ୍ରୀପ୍ରତି ମଧ୍ୟ ଉକ୍ତ ଉକ୍ତି ପ୍ରଯୁଜ୍ୟ।

ସେ ତାହାର ସ୍ୱାମୀଠାରେ ପିତାର ସ୍ନେହ ମମତାଦି ଉପଲବ୍ଧି କରି ନ ପାରି ନିଃସ୍ୱ ହୁଏ ।

ପିତା ବା ମାତା ପ୍ରତି ଅତ୍ୟଧିକ ଆସକ୍ତି ହେତୁରୁ ନାନାବିଧ ଅସ୍ୱାଭାବିକ ଯୌନବିକୃତି (Sexual Neurosis) ଜାତ ହୁଏ । ସମଲିଙ୍ଗୀ ଆଚରଣ ଅସ୍ୱାଭାବିକ ଯୌନବିକୃତିର ଫଳ । ପୁରୁଷର ପୁରୁଷ ପ୍ରତି ବା ସ୍ତ୍ରୀର ସ୍ତ୍ରୀ ପ୍ରତି ରମଣାତ୍ମକ ଆସକ୍ତିକୁ ସମଲିଙ୍ଗୀ ପ୍ରବୃତ୍ତି କୁହାଯାଏ । ନିଷ୍କ୍ରିୟ ଓ ସକ୍ରିୟ ଭେଦରେ ଦୁଇପ୍ରକାର ସମଲିଙ୍ଗୀ ପ୍ରବୃତ୍ତି ଦେଖାଯାଏ ।

**ମାଇଚିଆ** (Effeminate)—ନିଷ୍କ୍ରିୟ ସମଲିଙ୍ଗୀ ପୁରୁଷକୁ ମାଇଚିଆ କୁହାଯାଏ । ନିଷ୍କ୍ରିୟ ସମଲିଙ୍ଗୀ ପୁରୁଷ ନାରୀସୁଲଭ ଆଚରଣ ଓ ହାବଭାବ ପ୍ରକାଶ କରେ । ମାଇଚିଆମିର କାରଣ ହେଉଛି ଅତି ଶୈଶବରେ ଶିଶୁପୁତ୍ର ମାତାଠାରୁ ପିତାକୁ ଅଧିକତର ସ୍ନେହ କରେ ଏବଂ ନିଜକୁ ମାତାର ଆସନରେ ବସାଇ ନିଜର ଜନନୀ ସହ ସଉତୁଣୀ ପରି ବ୍ୟବହାର କରେ । ମାଇଚିଆ ଅନ୍ୟ ପୁରୁଷ ସହ ପ୍ରଣୟୀସୁଲଭ ଆଚରଣ ପ୍ରକାଶ କରେ । ସେ ଅବିବାହିତ ରହେ କିମ୍ବା ବିବାହ କଲେ ମଧ୍ୟ ଦାମ୍ପତ୍ୟଜୀବନ ତାହାର ସୁଖକର ହୁଏ ନାହିଁ । ମାଇଚିଆ ସ୍ତ୍ରୀଲୋକ ପରି ବସନ ଭୂଷଣାଦି ପରିଧାନ କରିବାକୁ ଭଲ ପାଏ, କଥାବାର୍ତ୍ତା କଲାବେଳେ ସେ ଅବିକଳ ସ୍ତ୍ରୀଲୋକ ପରି କଥାବାର୍ତ୍ତା କରେ । କଥାକଥାକେ ସ୍ତ୍ରୀଲୋକ ପରି ତାହାର ମୁଖରୁ ଛଗଡମାଲ ବାହାରି ପଡ଼େ ।

**ଅଣ୍ଡିରାଚଣ୍ଡୀ** (Masculine woman)—ସକ୍ରିୟ ସମଲିଙ୍ଗୀ ସ୍ତ୍ରୀକୁ ଅଣ୍ଡିରାଚଣ୍ଡୀ କୁହାଯାଏ । ଅଣ୍ଡିରାଚଣ୍ଡୀ ଅନ୍ୟ କୌଣସି ସ୍ତ୍ରୀପ୍ରତି ପ୍ରଣୟୀସୁଲଭ ଆଚରଣ ପ୍ରକାଶ କରେ; ଅଣ୍ଡିରାଚଣ୍ଡୀଠାରେ

ପୁରୁଷର ହାବଭାବ ଓ ଚାଲଚଳନ ଦେଖାଯାଏ । ଅଣ୍ଡିପସ୍‌ଗ୍ରନ୍ଥି ହେବାର ମନସ୍ତାତ୍ତ୍ୱିକ କାରଣ ହେଉଛି ଯେ ଅତି ଶୈଶବରେ ଶିଶୁକନ୍ୟା ମାତାକୁ ପିତାଠାରୁ ଅଧିକ ସ୍ନେହ କରେ ଏବଂ ନିଜକୁ ପିତାର ଆସନରେ ବସାଏ । ମାଇଚଣ୍ଡୀ ନିଜର ମାତାକୁ ନିଜର ପିତା ଓ ନିଜ ମଧ୍ୟରେ ଥିବା ସ୍ନେହର କଣ୍ଟକ ମନେ କରେ; ଏଣୁ ସେ ମାତାକୁ ତାହାର ପିତା ପ୍ରତି ନାନା ଭାବରେ ଶାସନ କରେ । ମାତ୍ର ଅଣ୍ଡିପସ୍‌ଗ୍ରନ୍ଥିର ଆଚରଣ ମାଇଚଣ୍ଡୀର ଆଚରଣଠାରୁ ଓଲଟା । ଅଣ୍ଡିପସ୍-ଗ୍ରନ୍ଥି ନିଜର ପିତାକୁ ମାତାର ଉତ୍ପୀଡ଼କ ଓ ନିଜର ଶତ୍ରୁ ମନେ କରେ । ଅଣ୍ଡିପସ୍‌ଗ୍ରନ୍ଥିର ଦାମ୍ପତ୍ୟ ଜୀବନ ଶାନ୍ତିମୟ ହୁଏ ନାହିଁ ।

ପୁରୁଷମାନଙ୍କ ମଧ୍ୟରେ ମାଇଚଣ୍ଡୀକୁ ଛାଡ଼ଦେଲେ ଅନ୍ୟ ଏକପ୍ରକାର ବିକୃତ ସମଲିଙ୍ଗୀ ଦେଖାଯାନ୍ତି; ଏମାନେ ସ୍ତ୍ରୀମାନଙ୍କର ସୌନ୍ଦର୍ଯ୍ୟରେ କ୍ୱଚିତ୍ ଆକୃଷ୍ଟ ହୁଅନ୍ତି । ଏମାନେ ଜୀବନସାରା ଅବିବାହିତ ରହନ୍ତି ଏବଂ ବିବାହ କଲେ ମଧ୍ୟ ସ୍ତ୍ରୀସହ ଏମାନେ କ୍ୱଚିତ୍ ସଂସର୍ଗ ରଖନ୍ତି । ଏହି ପ୍ରକାର ମାନସିକ ବିକୃତିଗ୍ରସ୍ତ ପୁରୁଷଙ୍କର ଆନନ୍ଦ କେବଳ ମାତ୍ର ପାୟୁମୂଳକ ରମଣାତ୍ମକ ଆଚରଣରେ ( Annal Sexual Perversions ) ପର୍ଯ୍ୟବସିତ ଥାଏ । ଶୈଶବରେ ଏମାନେ ମାତାଠାରୁ ପିତାକୁ ଅଧିକତର ସ୍ନେହ କରିବାର ଦେଖାଯାଇଥାଏ । କୌଣସି କୌଣସି ପୁରୁଷଙ୍କ ଠାରେ ସ୍ତ୍ରୀ ତଥା ପୁରୁଷ ଉଭୟଙ୍କ ସୌନ୍ଦର୍ଯ୍ୟରେ ଆକୃଷ୍ଟ ହେବାର ଦେଖା ଯାଏ । ଏହିପରି ବ୍ୟକ୍ତିଙ୍କୁ ଉଭୟଲିଙ୍ଗୀ (Bisexual) କୁହାଯାଏ ।

**ଆତ୍ମଲିଙ୍ଗୀ ବିକୃତି ( Auto-Sexual Neurosis )—** ଶୈଶବରେ ଶିଶୁର ପିତା ବା ମାତା ପ୍ରତି ସ୍ୱାଭାବିକ ସ୍ନେହ ପରିବର୍ତ୍ତେ ଶିଶୁ ଯଦି ନିଜକୁ ନିଜେ ଭଲ ପାଏ ଏବଂ ପିତାମାତାଙ୍କ ଉପରେ

ସର୍ବଦା ବିରକ୍ତ ହୁଏ, ତେବେ ଭବିଷ୍ୟତରେ ତାହାଠାରେ ଆତ୍ମଲିଙ୍ଗୀ ବିକୃତି ଦେଖାଦେଇ ପାରେ । ସେ କୌଣସି ସ୍ତ୍ରୀର ସୌନ୍ଦର୍ଯ୍ୟରେ ଆକୃଷ୍ଟ ହୋଇ ପାରେ ନାହିଁ । ସେ ହସ୍ତମୈଥୁନାସକ୍ତ ଓ ଦିବା ସ୍ୱପ୍ନଗ୍ରସ୍ତ ହୁଏ । ସେ ବିବାହ କଲେ ମଧ୍ୟ ହସ୍ତମୈଥୁନାଦିର ଅଦମ୍ୟ ପିପାସା ଛାଡ଼ି ପାରେ ନାହିଁ । ବସ୍ତୁତଃ ସେ ନିଜ ସଙ୍ଗରେ ନିଜେ ରତିସୁଖ ଅନୁଭବ କରେ ।

ପିତା ବା ମାତାଙ୍କୁ ସ୍ୱାଭାବିକ ସ୍ନେହ ନ କରି ଶିଶୁ ଯଦି ଗୃହପାଳିତ ଜୀବଜନ୍ତୁ ଓ କଣ୍ଢେଇ ପ୍ରଭୃତି ପ୍ରତି ଅତ୍ୟଧିକ ଆସକ୍ତ ହୁଏ, ତେବେ ଉତ୍ତରକାଳରେ ତାହାଠାରେ ବିଜାତିଲିଙ୍ଗୀ ବିକୃତି ଦେଖାଦେଇ ପାରେ । ଏହି ଭୟଙ୍କର ମାନସିକ-ବିକୃତିଗ୍ରସ୍ତ ବ୍ୟକ୍ତି ଗୃହପାଳିତ ପଶୁମାନଙ୍କ ପ୍ରତି ପ୍ରଣୟସୂଚକ ଆଚରଣ ପ୍ରକାଶ କରେ ।

ବିବର୍ତ୍ତନବାଦୀ ଓ ପ୍ରାଣିତତ୍ତ୍ୱବିତ୍ ପଣ୍ଡିତଙ୍କ ମତରେ ମନୁଷ୍ୟର ମନ ପରିବର୍ତ୍ତନଶୀଳ (Plastic) ହୋଇଥିବାରୁ ଯେଉଁ ଯେଉଁ ନିମ୍ନ ଜୀବମାନଙ୍କର ସ୍ତରରୁ ମାନବର କ୍ରମୋନ୍ନତି ଘଟିଅଛି, ସେହି ସେହି ନିମ୍ନଜୀବମାନଙ୍କର ଆଚରଣର ପୁନରାବୃତ୍ତି ମାନବଜୀବନରେ ଘଟିଥାଏ । କେତେକ କୀଟ ଉଭୟଲିଙ୍ଗୀ, ଅର୍ଥାତ୍ ଗୋଟିଏ କୀଟ ସ୍ତ୍ରୀ ଓ ପୁରୁଷ ଉଭୟର ଆଚରଣ ପ୍ରକାଶ କରେ । ଗେଣ୍ଡା ଓ ଶାମୁକା ପ୍ରଭୃତି କେତେକ ଜୀବ ଲିଙ୍ଗ ପରିବର୍ତ୍ତନ କରନ୍ତି ଅର୍ଥାତ୍ ମାଈ ଗେଣ୍ଡା ପୁରୁଷ ହୋଇଯାଏ ଏବଂ ପୁରୁଷ ଗେଣ୍ଡା ମାଈ ପାଲଟି ଯାଏ । ବିବର୍ତ୍ତନବାଦୀ ପଣ୍ଡିତଙ୍କ ମତରେ ଅତି ସାମାନ୍ୟ କୀଟ ଅବସ୍ଥାରୁ ଉନ୍ନତ ମାନବର କ୍ରମବିକାଶ ଘଟିଅଛି; ଏଣୁ ସମଲିଙ୍ଗୀ ଓ ଆତ୍ମଲିଙ୍ଗୀ ପ୍ରଭୃତି ଆଚରଣମାନ ପରିବର୍ତ୍ତନଶୀଳ ମାନବ ଜୀବନରେ କିଛିକାଳ ପାଇଁ ପୁନରାବୃତ୍ତ ହୁଏ । ଏଣୁ ପ୍ରତ୍ୟେକ ସୁସ୍ଥ ସବଳ ବାଳକ ବାଳିକା ଯୌବନାରମ୍ଭରେ ସମଲିଙ୍ଗୀ

ମନୋବୃତ୍ତିବିଶିଷ୍ଟ ହୁଅନ୍ତି । ମାତ୍ର ଏହି ପ୍ରକାର ମନୋବୃତ୍ତି ଦୁଇ ତିନି ବର୍ଷ ପରେ ଆପଣାଛାଏଁ ଚାଲିଯାଏ । ଯଦି ଏହି ନିମ୍ନସ୍ତରର ଆଚରଣ ଶୀଘ୍ର ଅନ୍ତର୍ହିତ ହୋଇ ନ ଯାଏ ତେବେ ବୁଝିବାକୁ ହେବ ଯେ କୌଣସି ପ୍ରକାର ମାନସିକ ବିକୃତି ବା ଗ୍ରନ୍ଥିର ବିଦ୍ୟମାନତା ଅଛି ।

ଯେଉଁ ଜାତିର ସ୍ତ୍ରୀମାନଙ୍କ ମଧ୍ୟରେ ପରଦାପ୍ରଥା ଦେଖାଯାଏ ବା ଯେଉଁ ଜାତିର ସ୍ତ୍ରୀସ୍ୱାତନ୍ତ୍ର୍ୟ ନାହିଁ ସେହି ଜାତିରେ ସମଲିଙ୍ଗୀ ଓ ଆତ୍ମଲିଙ୍ଗୀ ବିକୃତିଗ୍ରସ୍ତଙ୍କ ସଂଖ୍ୟା ଖୁବ୍ ବେଶୀ । ସାମାଜିକ ଜୀବନ ଖୁବ୍ ଜଟିଳ ହେଲେ ବା ଯୌନାଚରଣ ସମ୍ବନ୍ଧରେ ସାମାଜିକ ବିଧିନିଷେଧ ଓ କଟକଣାମାନ ଖୁବ୍ କଡ଼ା ହେଲେ ନାନାବିଧ ଯୌନବ୍ୟଭିଚାର ଓ ବିକୃତି ମୁଣ୍ଡ ଟେକେ ବୋଲି କେହି କେହି ପଣ୍ଡିତ ମତ ବ୍ୟକ୍ତ କରନ୍ତି ।

ଫ୍ରଏଡ଼ଙ୍କ ମତରେ ମାନବର ମାନସିକ ସ୍ୱାସ୍ଥ୍ୟ ଓ ମାନସିକ ବିକୃତି ତାହାର ଶୈଶବରେ ପିତା ମାତା ବା ପରିବାରର ଅନ୍ୟ ବ୍ୟକ୍ତିଙ୍କ ପ୍ରତି ଦୃଷ୍ଟିଭଙ୍ଗୀ ଉପରେ ନିର୍ଭର କରେ । ଶୈଶବରେ ବ୍ୟକ୍ତି-ବିଶେଷ ତାହାର ପିତା ମାତା ବା ପରିବାରର ଅନ୍ୟ ବ୍ୟକ୍ତିଙ୍କ ପ୍ରତି ସ୍ନେହଦୃଷ୍ଟିରେ କିମ୍ବା ବିଦ୍ୱେଷ ଦୃଷ୍ଟିରେ ଦେଖୁଥିଲି, ଏହା ନିର୍ଦ୍ଧାରଣ କରି ପାରିଲେ ଉତ୍ତର ଜୀବନରେ ତାହାର ମାନସିକ ବିକୃତିମାନଙ୍କର କାରଣମାନ ମଧ୍ୟ ଜାଣି ହେବ । ସହଜରେ ତାହାର ଆତ୍ମବିଶ୍ଳେଷଣ କରାଇ ମାନସିକ ଗ୍ରନ୍ଥି ଓ ବିକୃତିମାନଙ୍କ ନିରାକରଣ କରାଯାଇ ପାରିବ । ଶିଶୁର ଜନ୍ମ ହେବା ପରେ ଜନକ ଜନନୀ ସେମାନଙ୍କର ରମଣାତ୍ମକ ଆଚରଣରେ ଖୁବ୍ ସଂଯତ ହେବା

ବିଧେୟ । ଜନକ ଜନନୀ ଶିଶୁକୁ ଖୁବ୍ କଡ଼ା ଶାସନରେ ରଖିବେ ନାହିଁ ଅଥଚ ଏକାବେଳକେ ପ୍ରଶ୍ରୟ ବି ଦେବେ ନାହିଁ ।

ଶିଶୁମାନେ ଗୋଟିଏ ଅବସ୍ଥାରେ ନିଜର ମଳ ମୂତ୍ର ଘଣ୍ଟାଘଣ୍ଟି କରିବାରେ ଆମୋଦ ବୋଧ କରନ୍ତି ଏବଂ ମଳମୂତ୍ରର ବେଗ ରୋଧ କରନ୍ତି । ଏହି ଅବସ୍ଥାରେ ଶିଶୁକୁ ଖୁବ୍ ଶାସନ କରିବା, ମାରିବା ବା ଗାଳିଦେବା ଯେପରି ବିପଜ୍ଜନକ, ଶିଶୁର ଏବମ୍ବିଧ ଆଚରଣରେ କୌଣସି ପ୍ରକାର ପ୍ରତିକାର ନ କରି ଏକାବେଳକେ ଆଖି ବୁଜି ଦେବା ମଧ୍ୟ ତତୋଽଧିକ ଅନିଷ୍ଟକର । ଖୁବ୍ କଡ଼ା ଶାସନ କରିବା ବା ଆଦୌ ଶାସନ ନ କରିବା ଫଳରେ ବ୍ୟକ୍ତିବିଶେଷର ଜୀବନରେ ନାନାବିଧ ଯୌନବିକୃତି ଲକ୍ଷିତ ହୁଏ ।



## ନବମ ପରିଚ୍ଛେଦ

### ଆତଙ୍କୋନ୍ମାଦ ( Phóebia )

ମଣିଷ ଯେଉଁ ଇଚ୍ଛା ବା କାମନା କରେ, ସେହି କାମନା-ମାନଙ୍କ ମଧ୍ୟରୁ ଅଧିକାଂଶ ଅତୃପ୍ତ ରହେ । ଅତି ଶୈଶବରେ ଶିଶୁର ଇଚ୍ଛାରେ ବ୍ୟାଘାତ ଘଟିଲେ ସେ ଜନକ ଜନନୀ ବା ପରିବାରର ଅନ୍ୟ ବ୍ୟକ୍ତିଙ୍କ ଉପରେ, ଗୃହପାଳିତ ପଶୁ ଉପରେ ବା କଣ୍ଢେଇ ପ୍ରଭୃତି ଜଡ଼ବସ୍ତୁ ଉପରେ କ୍ରୋଧ ପ୍ରକାଶ କରେ । ଶିଶୁ ଚାଲି ଅସୁ ଅସୁ କଚ୍ଛିଡ଼ି ପଡ଼ିଲେ ମାଟି ଉପରେ ବା ମାଆ ଉପରେ ରାଗେ । ଶିଶୁର ହାତ ନିଆଁରେ ପୋଡ଼ିଗଲେ ସେ ନିଆଁ ଉପରେ ବା ନିଜ ମାଆ ଉପରେ କ୍ରୋଧ ପ୍ରକାଶ କରେ । ଯାହା ପ୍ରତି କ୍ରୋଧ ହୁଏ, ତାହା ପ୍ରତି ମଧ୍ୟ ଭୟ ହୁଏ । ଗୁରୁ ଲୋକଙ୍କୁ କ୍ରୋଧଶୀଳ ଓ ଓ ହତ୍ୟାକାରୀ ହୋଇଥାଏ । ଏଣୁ କ୍ରୋଧ ଓ ଭୟକୁ ଉଭୟପ୍ରାନ୍ତୀ ( bipolar ) କୁହାଯାଏ । କଥା ହେଉଛି କ୍ରୋଧ ଜାଗ୍ରତ ଥିଲା-ବେଳେ ଭୟ ସୁପ୍ତ ଥାଏ ଏବଂ ଭୟ ଜାଗ୍ରତ ହେବାବେଳେ କ୍ରୋଧ ସୁପ୍ତ ହୋଇଯାଏ ।

ଶିଶୁପୁତ୍ର ସାଧାରଣତଃ ମାତା ଉପରେ କ୍ରୋଧ କରେ ଓ ପିତାକୁ ଭୟ କରେ; ମାତ୍ର ଶିଶୁକନ୍ୟା ପିତା ଉପରେ ରାଗ କରେ ଓ ମାତାକୁ ଭୟ କରେ । ଗୋଟିଏ ବସ୍ତୁ ବା ବ୍ୟକ୍ତି ପ୍ରତି କ୍ରୋଧ ବା ଭୟ ହେଲେ ଏହି ଭୟ ବା କ୍ରୋଧ ଅନ୍ୟ ବସ୍ତୁ ବା ବ୍ୟକ୍ତି ପ୍ରତି ରୂପାନ୍ତରିତ ହୋଇଯାଏ । କୌଣସି ଶିଶୁର ହାତ ନିଆଁରେ ପୋଡ଼ିଗଲେ ସେ ଜୁଳୁଜୁଳିଆ ପୋକକୁ ମଧ୍ୟ ନିଆଁ ଭ୍ରମରେ ଭୟ କରେ ।

ଅନ୍ଧକାରୋନ୍ମାଦ ଗୋଟିଏ ମାନସିକ ବିକୃତି । ଏହା ରୂପାନ୍ତରିତ ଭୟ (transferred fear) ବ୍ୟତୀତ ଆଉ କିଛି ନୁହେଁ । ଅନ୍ଧାର ପ୍ରତି ଭୟ ପ୍ରତ୍ୟେକ ମଣିଷଠାରେ ଊଣା ଅଧିକରେ ଦେଖାଯାଏ । ଏହା ମଣିଷଜାତିର ଗୋଟାଏ ପରମ୍ପରାଗତ ବା ପୁରୁଷାନୁକ୍ରମିକ (Heriditary) ଭୟ । ଅତି ଆଦିମ ଯୁଗରେ ମଣିଷ ଯେତେବେଳେ କୃତ୍ରିମ ଆଲୋକର ଉଦ୍ଭାବନ କରି ନ ଥିଲା ଏବଂ ଯେତେବେଳେ ସେ ହିଂସ୍ରଜନ୍ତୁ ପରିବେଷ୍ଟିତ ହୋଇ ଭୀତତ୍ରସ୍ତ ଭାବରେ ଜୀବନଯାପନ କରୁଥିଲା, ସେତେବେଳେ ଅନ୍ଧାର ରାତିରେ ସେ ଅନେକ ବିପଦ ଆପଦରେ ପଡୁଥିଲା । ସେହି ସମୟରୁ ଆଜଯାଏ ଏ ଅନ୍ଧାରଭୟ ତାହାର ମନରେ ରହିଅଛି ।

ଏହି ଅନ୍ଧାରଭୟ ଜଣ ଜଣକର ମନରେ ଏକ ପ୍ରକାର ଉନ୍ମାଦରୂପେ ପରିଣତ ହୁଏ । ଏହି ପ୍ରକାର ଉନ୍ମାଦଗ୍ରସ୍ତ ବ୍ୟକ୍ତି ଅନ୍ଧାରରେ ଯାଉଥିବା ବେଳେ ପ୍ରତି ପଦକ୍ଷେପରେ ଆତଙ୍କ ଗଣେ । ଟିକିଏ କିଛି ଖସ୍ କରି ହେଲେ ସେ ଚମକି ପଡ଼େ । ଗଛରୁ ପକ୍ଷୀଟାଏ ଉଡ଼ିଗଲେ ସେ ଛାତିକୁ ଥୁ ଥୁ କରି ଛେପ ପୋପାଡ଼ ଛାଡ଼ି ଦିଏ । ପଥରେ କୌଣସି ଲମ୍ବା ବସ୍ତୁ ପଡ଼ିଥିଲେ ସର୍ପଭ୍ରମରେ ପଛକୁ ହୁଇହାତ ଡେଇଁପଡ଼େ ।

ଭୂତଭୟ ମଧ୍ୟ ଏକପ୍ରକାର ପୁରୁଷାନୁକ୍ରମିକ ଭୟ । ମଣିଷର ଅନ୍ୟ ଜୀବଠାରୁ ଗୋଟିଏ ପ୍ରଧାନ ପ୍ରଭେଦ ଏହାହିଁ ଯେ ସେ ଅନ୍ୟ କୌଣସି ବ୍ୟକ୍ତି ବା ବସ୍ତୁର ଅନୁପସ୍ଥିତିରେ ମଧ୍ୟ ତାହା ବିଷୟରେ ଭାବି ପାରେ । ଏହି ଶକ୍ତି ଏକା ମଣିଷର ଅଛି, ଅନ୍ୟ କାହାର ନାହିଁ । ମାତ୍ର ଏହି ଶକ୍ତି ମଣିଷକୁ ସବୁ ଜୀବଠାରୁ ଶ୍ରେଷ୍ଠ କରିଥିଲେ ମଧ୍ୟ ତାହାକୁ ଗୋଟାଏ ମସ୍ତବଡ଼ ଅସୁବିଧାରେ ପକାଇଛି; ତାହାର

ଭୂତଭୟ ଜାତ ହୋଇଅଛି । କୌଣସି ବ୍ୟକ୍ତି ନିର୍ଜନ ଶ୍ମଶାନ ବା ନିର୍ଜନ ପଥରେ ରାତିରେ ଯାଉଥିବା ବେଳେ ମୃତବ୍ୟକ୍ତିଙ୍କୁ ଭାବୁ ଭାବୁ ବେଳେ ବେଳେ ମୃତ ବ୍ୟକ୍ତିର କଳ୍ପିତ ରୂପ ତାହାର ଭୟ-ଚକିତ ଚକ୍ଷୁ ଆଗରେ ଦେଖାଯାଏ । ରାତିରେ ଯାଉଥିବା ବେଳେ ସେ ଗୋଟାଏ ଥୁଣ୍ଟା ଗଛକୁ ଦୀର୍ଘକାୟ ଭୂତ ବୋଲି ଆଶଙ୍କା କରେ । ଏହି ଆଶଙ୍କା ଘନୀଭୂତ ହେଉଥିଲେ ଥୁଣ୍ଟା ଗଛଟା ଗୋଡ଼ହାତ ହଲେଇବା ପରି ଜଣାଯାଏ । କୌଣସି କୌଣସି କୃଷୀ ଅତ୍ୟଧିକ ମାନସିକ ଉତ୍ତେଜନାବଶତଃ ନିଶାର୍ଦ୍ଧରେ କଳ୍ପିତ ସଙ୍ଗୀର ପଛେ ପଛେ ଯାଇ ଫସଲ କିଆରିରେ ପାଣି ମଡ଼ାଇବାର ଶୁଣା ଯାଇଅଛି । ଉତ୍ତେଜନାର ତିରୋଧାନ ପରେ କଳ୍ପିତ ସଙ୍ଗୀର ତିରୋଧାନ ହେବାରୁ ତାହାର ଆତଙ୍କ ହୋଇଥାଏ ଯେ ଏହି ଅନ୍ତର୍ହିତ ସଙ୍ଗୀଟି ଗୋଟିଏ ଭୂତ ବା ବ୍ରହ୍ମରାକ୍ଷସ । ତେବେ ଭୟ ବା ଉତ୍ତେଜନାର ହେତୁ କଳ୍ପିତ ଭୂତର ଆବିର୍ଭାବ ହୁଏ ବୋଲି ଯେ ପ୍ରକୃତ ଭୂତ ପ୍ରେତ ବା ଅଶରୀରୀ ଜୀବର ବିଦ୍ୟମାନତା ବା ଅସ୍ତିତ୍ୱ ନାହିଁ, ତାହା ଆମ୍ଭେମାନେ କହୁ ନାହୁଁ । ଅତ୍ୟଧିକ ଭୟ ଓ ଉତ୍ତେଜନା ହେତୁ ଲୋକ ନାନାବିଧ କଳ୍ପିତ ବିଭୀଷିକା ଯେ ଦେଖେ ଏହା ସତ୍ୟ । ଥରେ ଗୋଟିଏ କଲେଜରେ ଜଣେ ବ୍ୟକ୍ତିକୁ ସମ୍ମୁଗ୍ଧ (Hipnotised) କରି ଏହି ସମ୍ମୁଗ୍ଧ ଅବସ୍ଥାରେ ତାହାକୁ କୁହାଗଲା, 'ତୁମେ ଆଜି ରାତି ଗୋଟାଏବେଳେ ବିଛଣାରୁ ଉଠି ଉଏନା ପାର୍କରେ ଜଳସେଚନ କରିବ ।' ଉକ୍ତ ଲୋକଟି ସମ୍ମୁଗ୍ଧ ଅବସ୍ଥାରେ ପ୍ରଦତ୍ତ ସୂଚନା ଅନୁଯାୟୀ ରାତି ଗୋଟାଏବେଳେ ବିଛଣାରୁ ଉଠି ପୂର୍ବୋକ୍ତ ପାର୍କକୁ ଯାଇ ଜଳସେଚନ କରିଥିଲା । (Macdonel's abnormal psychology) ଏହି ସମ୍ମୋହନ ନିୟମ ଅନୁସାରେ ଅନେକ ଭୂତ ଦର୍ଶନ କରନ୍ତି ।

ଭୂତାତଙ୍କଗ୍ରସ୍ତ ବ୍ୟକ୍ତି ନିଜ ଘର ଭିତରେ ଶୋଇଥିବାବେଳେ ମଧ୍ୟ ଅନ୍ଧାରରେ କବାଟ ଖୋଲି ନିର୍ଦ୍ଦିଷ୍ଟ ନିକଟକୁ ପରିସ୍ରା କରି ଯିବାକୁ ଭୟ କରେ । 'ତାହାର ପରିବାରରେ କେହି ମରିଗଲେ ସେ ରାତିରେ କବାଟ ଖୋଲି ପରିସ୍ରା କରି ଯିବାକୁ ସାହସ କରେ ନାହିଁ । ଯେଉଁ ଗୃହରେ ମୃତବ୍ୟକ୍ତିର ଶବ ପଡ଼ି ରହିଥିଲା, ସେହି ଗୃହକୁ ଦିନବେଳେ ମଧ୍ୟ ଏକାକୀ ଯିବାକୁ ସାହସ କରେ ନାହିଁ । ମୃତ ବ୍ୟକ୍ତିର କଥାବାର୍ତ୍ତା ଓ ଊର୍ଦ୍ଧ୍ୱଶ୍ୱାସ ତାହାକୁ ରାତିରେ ଶୋଇଥିବା ବେଳେ ଗୃହଅଡ଼େ ଶୁଭେ । ଭୂତାତଙ୍କଗ୍ରସ୍ତ ବ୍ୟକ୍ତି ରାତିରେ ଏକା ଯାଉଥିବା ବେଳେ ମନେ କରେ ଯେ ତାହା ପଛେ ପଛେ କେହି ଜଣେ ଅଛନ୍ତି ।

ସର୍ପାତଙ୍କ ଅନ୍ୟ ଏକ ପ୍ରକାର ମାନସିକ ବିକୃତି । ସର୍ପକୁ ଭୟ କରିବା ବିଶେଷତଃ ଅନ୍ଧାର ରାତିରେ ଯାଉଥିବା ବେଳେ ସର୍ପଭୟ ଏକ ପ୍ରକାର ସ୍ୱାଭାବିକ ଭୟ । ମାତ୍ର ଅନ୍ଧାରରେ ଯାଉ-ଥିବା ବେଳେ ପ୍ରତି ପଦକ୍ଷେପରେ ସାପ ଉପରେ ଗୋଡ଼ ପଡ଼ିଯିବାର ଭୟ ବା ସାପ କାମୁଡ଼ି ପକାଇବାର ଭୟ ନିଶ୍ଚୟ ଅସ୍ୱା-ଭାବିକ । ଏହି ପ୍ରକାର ସର୍ପାତଙ୍କଗ୍ରସ୍ତ ବ୍ୟକ୍ତି ସଙ୍ଗୀମେଳରେ ରାତିରେ ଯାଉଥିବା ବେଳେ କେବେ ଆଗରେ ଯିବାକୁ ସାହସ କରେ ନାହିଁ । ସେ କେବେ ଝରକା କବାଟ ମେଲି କରି ଶୋଇବାକୁ ସାହସ କରେ ନାହିଁ, କାଳେ ଗୋଟାଏ ବିଷଧର ସର୍ପ ଆସି ତାହାକୁ ଶୋଇଥିବା ଅବସ୍ଥାରେ ଦଂଶନ କରିବ; କାଳେ ତାହାର ନିଦ ଭାଙ୍ଗିଗଲେ ସେ ଯଦି ଖୋଲା ଝରକା ବାଟେ ବାହାରକୁ ଚାହିଁଦିଏ; କୌଣସି ଅପଦେବତା ବା ଭୂତ ପ୍ରେତ ଉପରେ ତାହାର ଦୃଷ୍ଟି ପଡ଼ିଯିବ; କାଳେ କେହି ଝରକାବାଟେ ହାତ ଗଳାଇ ତାହାର ତଣ୍ଟି ଚିପିଦେବ

ବା ତାହାକୁ ଛୁରିରେ ଭୁଷା ମାରିବ । ଏହି ପ୍ରକାର ବ୍ୟକ୍ତି ତାହାର ଚତୁର୍ଦ୍ଦିଗରେ ଚୌର ଓ ଶତ୍ରୁ ଖ୍ରାଁତ ଦେଖେ ।

ମେଘଗର୍ଜ୍ଜନରେ ଭୟ ମଧ୍ୟ ସ୍ୱାଭାବିକ । ମାତ୍ର ଏହି ଭୟ ମଧ୍ୟ କେତେକଙ୍କଠାରେ ଅସ୍ୱାଭାବିକ ବିକୃତିରେ ପରିଣତ ହୁଏ । ସାମାନ୍ୟ ବିଦ୍ୟୁତ୍‌ଚମକ ଓ ମେଘର ମୃଦୁଗର୍ଜନରେ କେହି କେହି କବାଟ ବନ୍ଦ ଘରେ ପଶନ୍ତି ବା ଖଟତଳେ ଲୁଚନ୍ତି । ଆତଙ୍କଗ୍ରସ୍ତ ବ୍ୟକ୍ତି ବାଟରେ ଯାଉଥିବାବେଳେ ସାମାନ୍ୟ ମେଘଗର୍ଜନ ଶୁଣିବା କ୍ଷଣି ଭଗବାନଙ୍କୁ ଆତଙ୍କରେ ଡକା ପକାଏ "ହେ ପ୍ରଭୁ ରକ୍ଷା କର ।"

ନଦୀ ବା ପୁଷ୍କରିଣୀର ଜଳ ଦେଖିଲା ମାତ୍ରେ କାହାର କାହାରକି ପରିସ୍ରା ମାଡ଼େ । ଏହି ପ୍ରକାର ବିକୃତିକୁ ଜଳାତଙ୍କ (Hydro phoelia) କହନ୍ତି । ଜଳ ଦେଖିବା ମାତ୍ରେ ମୂତ୍ରବେଗ ଘଟିବା ଅତ୍ୟଧିକ ହସ୍ତମୈଥୁନ ହେତୁ ଘଟେ ଫ୍ରଏଡ଼ଙ୍କ ମତରେ ପ୍ରତ୍ୟେକ ପ୍ରକାର ଆତଙ୍କମୂଳରେ ହସ୍ତମୈଥୁନର କୁଫଳ ଏବଂ ପିତା, ଶିକ୍ଷକ ବା ଅଭିଭାବକଙ୍କ ପ୍ରତି ଭୟ ରହିଥାଏ । ହସ୍ତମୈଥୁନହେତୁ ବାଳକ ବା ବାଳିକା ପିତା ବା ଶିକ୍ଷକଙ୍କୁ ଭୟ କରି ଶେଷରେ ଭୂତାତଙ୍କଗ୍ରସ୍ତ ବା ଜଳାତଙ୍କଗ୍ରସ୍ତ ଇତ୍ୟାଦି ହୁଅନ୍ତି । ଏହି ପ୍ରକାର ଆତଙ୍କୋନ୍ମାଦ ରୂପାନ୍ତରିତ ଭୟ ଛଡ଼ା ( transferred fear ) ଆଉ କିଛି ନୁହେଁ ।

କେହି କେହି ଆତଙ୍କୋନ୍ମାଦଗ୍ରସ୍ତ ବ୍ୟକ୍ତି କୌଣସି ପ୍ରକାର ଯାନବାହନରେ ଯିବାକୁ ସାହସ କରନ୍ତି ନାହିଁ ଏବଂ ଯାନରେ ଯିବାବେଳେ ଆତଙ୍କିତ ହୁଅନ୍ତି । ସେମାନଙ୍କର ଆଶଙ୍କା ହୁଏ କାଳେ ଗାଡ଼ିଟା ଓଲଟି ପଡ଼ିବ, କାଳେ ଟ୍ରେନଟା ଅନ୍ୟ କୌଣସି ଟ୍ରେନରେ ଧକ୍‌କା ଖାଇବ, କାଳେ ମଟରଟା ଯାଉ ଯାଉ ରାସ୍ତାରୁ ଗଡ଼ି ପଡ଼ିବ । ସେମାନେ ସାଇକଲରେ ଯିବାବେଳେ ବହୁଦୂରରୁ ମଟରର ଶବ୍ଦ

ଶୁଣି ସାଇକଲରୁ ଓହ୍ଲାଇ ପଡ଼ି ସତର୍କତା ଅବଲମ୍ବନ କରନ୍ତି । ରିକ୍ସାରେ ଯାଉଥିବାବେଳେ ଦୂରରୁ ମଟରଶବ୍ଦ ଶୁଣି ରିକ୍ସାବାଲାକୁ ସାବଧାନ ହେବାପାଇଁ ଡାକଦିଅନ୍ତି । ସେମାନେ ଦୁଇ କଡ଼ରେ ବଡ଼ ବଡ଼ କୋଠାଘର ଥିବା ରାସ୍ତାରେ ଯିବାକୁ ଭୟ କରନ୍ତି, କାଳେ କୋଠାସବୁ ସେମାନଙ୍କ ଉପରେ ଭୁଷୁଡ଼ି ପଡ଼ିବ ।

ବିଶେଷ ବିଶେଷ ଜୀବକୁ କେହି କେହି ଅତ୍ୟନ୍ତ ଭୟ କରନ୍ତି । ଏହି ଜୀବଗୁଡ଼ିକ ନିରୀହ ଏବଂ ଅନପକାରୀ, ତଥାପି ଏମାନଙ୍କ ପ୍ରତି ଭୟ ଅସ୍ୱାଭାବିକ ହୋଇପଡ଼େ । କେହି କେହି ବିଶେଷତଃ ସ୍ତ୍ରୀମାନେ ଜିଆ ବା ତେଲ୍‌ଚିପୋକ ଦେଖିଲେ ଅତ୍ୟନ୍ତ ଭୀତତ୍ରସ୍ତ ହୁଅନ୍ତି । ବେଙ୍ଗ ଗୋଟାଏ ନିରୀହ ଜୀବ, ତଥାପି ବେଙ୍ଗକୁ ଦେଖିଲା କ୍ଷଣି କେହି କେହି ପଳାଇଯାନ୍ତି । ମନୁଷ୍ୟଜାତି ପ୍ରତି ଭୟ କୌଣସି କୌଣସି ଆତଙ୍କଗ୍ରସ୍ତ ବ୍ୟକ୍ତିଠାରେ ଦେଖାଯାଏ । ଶିଶୁ ଅପରିଚିତ ବ୍ୟକ୍ତିକି ଦେଖିଲେ ଭୟରେ ମାଆର ପଛଆଡ଼େ ବା ଖଟ ତଳେ ଲୁଚିଯାଏ । ନିର୍ଦ୍ଦିଷ୍ଟ ପଥରେ ଗଲେ ହୋଁ ଚୋଁ ହେବ ଭାବି ଏବଂ ଅନ୍ୟମାନଙ୍କର ଦୃଷ୍ଟି ଆକର୍ଷଣ କରିବ ବୋଲି ଭୟ କରି ବୁଲି କରି ବିକଳ୍ପରେ ଯିବାଟା ଆତଙ୍କଗ୍ରସ୍ତ ବ୍ୟକ୍ତିର ଗୋଟାଏ ଲକ୍ଷଣ ।

ପୂର୍ବରୁ କୁହାଯାଇଛି ଯେ ଭୟ, ଏବଂ କ୍ରୋଧ ଉଭୟପ୍ରାନ୍ତୀ ଅର୍ଥାତ୍ ଭୟ ଏବଂ କ୍ରୋଧ ଏକତ୍ର ଅବସ୍ଥାନ କରନ୍ତି; ମାତ୍ର ଭୟ ଜାଗ୍ରତ ଥିବାବେଳେ କ୍ରୋଧ ସୁପ୍ତ ବା ପ୍ରଚ୍ଛନ୍ନ ଥାଏ ଏବଂ କ୍ରୋଧ ଜାଗ୍ରତ ହେଲେ ଭୟଟି ଚପିଯାଏ । ଏଣୁ ଯାହାଠାରେ କ୍ରୋଧର ମାତ୍ରା ଯେତିକି କମ୍ ସେ ସେତିକି ନିର୍ଭୀକ । ପ୍ରକୃତ ସାଧୁସନ୍ନ୍ୟାସୀ-ମାନେ କ୍ରୋଧକୁ ସଂଯତ କରିଥାନ୍ତି, ଏଣୁ ସେମାନେ ଢେର ଅଧିକରେ ନିର୍ଭୀକ ।

# ଦଶମ ପରିଚ୍ଛେଦ

## ପ୍ରହେଳିକା ଓ ଭ୍ରମ (Illusions and Delusions)

ରାତରେ ଖଣ୍ଡିଏ ରସି ସର୍ପବତ୍ ପ୍ରତୀତ ହେଲେ ତାହାକୁ ଭ୍ରମ କୁହାଯାଏ ; ମାତ୍ର ଦର୍ଶକର ଆଖିଆଗରେ ଯଦି ଗୋଟାଏ କଳ୍ପିତ ସର୍ପ ହଲହଲ ହୋଇ ଚାଲିଯିବାର ଦେଖାଯାଏ, ତେବେ ଏହି ପ୍ରକାର ଭ୍ରମକୁ ପ୍ରହେଳିକା ବା ମାୟା କୁହାଯାଏ । ବିଲ୍ୱମଙ୍ଗଳ ସର୍ପକୁ ଗୋଟାଏ ରସି ଭାବି ତାହାର ସାହାଯ୍ୟରେ କାନ୍ଥଉପରକୁ ଚଢ଼ି ଯାଇଥିଲେ ଏବଂ ମୁର୍ଦ୍ଦାରକୁ ଗୋଟାଏ ନୌକା ଭାବି ଏହି ମୁର୍ଦ୍ଦାର ଉପରେ ବସି ନଦୀ ପାର ହୋଇଥିଲେ । ଏହି ପ୍ରକାର ଆଚରଣକୁ ଭ୍ରମାତ୍ମକ କୁହାଯାଏ । ଏକପ୍ରକାର ବସ୍ତୁ ଅନ୍ୟ ଏକପ୍ରକାର ବସ୍ତୁ ପରି ଦେଖାଗଲେ ତାହାକୁ ଭ୍ରମ କୁହାଯାଏ । ମାତ୍ର ପ୍ରହେଳିକାରେ କୌଣସି ପ୍ରକାର ବସ୍ତୁର ବିଦ୍ୟମାନତା ନ ଥାଏ । ଶଙ୍କରାଚାର୍ଯ୍ୟ ଓ ବେଦାନ୍ତମତରେ ଗୋଟିଏ ମାତ୍ର ବସ୍ତୁ ଭିନ୍ନ ଭିନ୍ନ ବସ୍ତୁରୂପେ ପ୍ରତୀତ ହେଲେ ତାହାକୁ ମାୟା ବା ପ୍ରହେଳିକା କୁହାଯାଏ । ବେଦାନ୍ତ-ମତରେ ଏକ ଅଖଣ୍ଡ ଆତ୍ମା ବା ବିରାଟ ବ୍ରହ୍ମହିଁ ଭ୍ରାନ୍ତ ଆଖିକୁ ମନୁଷ୍ୟ, ପଶୁ, ପକ୍ଷୀ, କୀଟ, ପତଙ୍ଗ, କ୍ଷିତି, ଅପ୍, ତେଜ, ମରୁତ୍ ଓ ଆକାଶ, ନଦନଦୀ, ପର୍ବତ, ବୃକ୍ଷଲତା ଓ ଗ୍ରହନକ୍ଷତ୍ରାଦି ଆକାରରେ ଦେଖା-ଯାଏ । ଏହାହିଁ ମାୟା ବା ପ୍ରହେଳିକା । ଗୋଟାଏ ବିଶାଳ ଜଳ-ରାଶି ଉପରେ ଦେଖାଯାଉଥିବା ବିଭିନ୍ନ ରଙ୍ଗର ଜଳବୁଦ୍‌ବୁଦ ପ୍ରହେଳିକା ମାତ୍ର, ସତ୍ୟ କେବଳ ବିଶାଳ ଜଳରାଶିର ବିଦ୍ୟମାନତା । ଯାହାହେଉ, ଏ ଗମ୍ଭୀର ଦାର୍ଶନିକ ବିଚାର । ଆମ୍ଭେମାନେ ଏଠାରେ ଦାର୍ଶନିକ ପ୍ରହେଳିକା ଓ ଭ୍ରମର ବିଚାର କରୁ ନାହୁଁ । ପ୍ରହେଳିକା ଓ ଭ୍ରମ ଯୋଡ଼ାଏ ମାନସିକ ବିକୃତି ଏବଂ ଏହି ବିକୃତିକୁ ବୁଝାଇବାକୁ

ଯାଇ ଆମ୍ଭେମାନେ ଦାର୍ଶନିକ ବ୍ୟାଖ୍ୟାର ଆବଶ୍ୟକତା ମନେ କଲୁ । ବେଦାନ୍ତ ଦର୍ଶନର ମାୟାବାଦ ଗ୍ରହଣ କଲେ ପ୍ରତ୍ୟେକ ବ୍ୟକ୍ତିକୁ ଭ୍ରାନ୍ତ ଓ ମାୟାଗ୍ରସ୍ତ ମନେ କରିବାକୁ ପଡ଼ିବ । ସୂକ୍ଷ୍ମଭାବରେ ବିଚାର କରିବାକୁ ଗଲେ ଭୌତିକବାଦ ଓ ଆଧ୍ୟାତ୍ମିକବାଦ ଉଭୟମତ ଅନୁସାରେ ଆମ୍ଭେମାନେ ଭ୍ରାନ୍ତ । ଭୌତିକବାଦ ଅନୁସାରେ ଏହି ବିରାଟ ବିଶ୍ୱ ଅଣୁପରମାଣୁର ସମଷ୍ଟି ନେଇ ଗଠିତ । ଯେଉଁ ଅଣୁମାନଙ୍କଦ୍ୱାରା ଗୋଟାଏ ଜଡ଼ ପଦାର୍ଥ ସୃଷ୍ଟ, ଠିକ୍ ସେହି ପ୍ରକାର ଅଣୁମାନଙ୍କରେ ଗୋଟିଏ ଜୀବନ୍ତ ପ୍ରାଣୀ ମଧ୍ୟ ସୃଷ୍ଟ । ଏଣୁ ଜଡ଼ ବା ଚେତନ ମଧ୍ୟରେ ସୂକ୍ଷ୍ମ ପାର୍ଥକ୍ୟ କିଛି ନାହିଁ, ମାତ୍ର ବାହାର ଆଖିରେ ଜଡ଼ ଓ ଚେତନ ମଧ୍ୟରେ ଆମ୍ଭେମାନେ ଅନେକ ପ୍ରଭେଦ ଦେଖୁଁ ; ଏହାହିଁ ଭ୍ରମ ।

ପୂର୍ବରୁ କହିଅଛୁଁ ଯେ ସୂକ୍ଷ୍ମଭାବରେ ବିଚାର କରିବାକୁ ଗଲେ ଆମ୍ଭେମାନେ ସମସ୍ତେ ଭ୍ରାନ୍ତ ବା ମାୟାଗ୍ରସ୍ତ । ମାତ୍ର ସ୍ଥୂଳଦୃଷ୍ଟିରେ ଆମ୍ଭେମାନେ କାହାକୁ ଭ୍ରାନ୍ତ ବା ପ୍ରହେଳିକାବିକୃତଗ୍ରସ୍ତ ମନେ କରିବା, ତାହାହିଁ ଏହି ପ୍ରବନ୍ଧରେ ଆଲୋଚ୍ୟ ବିଷୟ । ଉନ୍ମାଦ ଓ ଟାଇଫଏଡ଼ ପ୍ରଭୃତି ମାନସିକ ଓ ଶାରୀରିକ ବ୍ୟାଧିରେ ପ୍ରହେଳିକା ଓ ଭ୍ରମ ବେଶୀ ଦେଖାଯାଏ । ଉନ୍ମାଦରେ ମନର ଚୈତନ୍ୟାବସ୍ଥା ସମ୍ପୂର୍ଣ୍ଣ ଲୋପ ହୋଇଯାଏ, ଏଣୁ ଉନ୍ମତ୍ତ ବ୍ୟକ୍ତି ବହୁ ପ୍ରହେଳିକା ଦର୍ଶନ କରେ । ଟାଇଫଏଡ଼୍ ଏକପ୍ରକାର ସାନ୍ନିପାତିକ୍ ସାଙ୍ଘାତିକ ଜ୍ୱର ଏବଂ ସର୍ବବିଧ ସାନ୍ନିପାତିକ ରୋଗରେ ରୋଗୀ ନାନାବିଧ ପ୍ରହେଳିକା ଦେଖେ ଓ ଭ୍ରମରେ ପଡ଼େ ।

ଉନ୍ମତ୍ତ ବ୍ୟକ୍ତି କାଳ୍ପନିକ ଜୀବ ଓ କାଳ୍ପନିକ ବ୍ୟକ୍ତି ବା କାଳ୍ପନିକ ବସ୍ତୁର ଅନୁସରଣ କରେ । ସେ ଏପରି ଭାବରେ

ଦ୍ରୁତଗତିରେ ଚାଲିପାଏ ଯେ ମନେ ହୁଏ, ଯେପରି କି ତାହାର ପଛରେ ସେ ଗୋଡ଼ାଇ ଯାଉଛି । ତାହାକୁ ପଚାରିଲେ ସେ ଉତ୍ତର ଦିଏ ଯେ "ତାହାର ପୁଅଟା ବା ଝିଅଟା ଲୁଚି କରି ପଳାଇ ଯାଉଛି ଏବଂ ସେ ତାକୁ ଧରିବାକୁ ଯାଉଛି ; ତାହାର ଗାଈଟା ପଘାରୁ ଛୁଟି ଚାଲି ଯାଉଛି, ସେ ତାକୁ ଧରିବାକୁ ଯାଉଛି; ତାହାର ବନ୍ଧୁକୁ ଗୋଟାଏ ପକ୍ଷୀ ଉଡ଼ିଯାଉଛି, ସେ ତାହା ଧରିବାକୁ ଯାଉଛି ।" ସେ ତାହାର କାଳ୍ପନିକ ପୁଅ ବା ଝିଅ ସଙ୍ଗରେ କଥା କହେ, ସେମାନଙ୍କୁ ଗାଳି ଦିଏ, ସେମାନଙ୍କ କାଳ୍ପନିକ ପ୍ରଶ୍ନର ଉତ୍ତର ଦିଏ ଏବଂ ସେମାନଙ୍କୁ ପ୍ରଶ୍ନ ପଚାରି କାଳ୍ପନିକ ଉତ୍ତର ଆଦାୟ କରେ । ଉନ୍ମାଦଗ୍ରସ୍ତ ସ୍ତ୍ରୀ ତାହାର କଳ୍ପିତ ସ୍ୱାମୀକୁ କାମୁଡ଼ିବାକୁ ଯାଇ ଭ୍ରମରେ ଦ୍ୱାରବନ୍ଧକୁ କାମୁଡ଼ିପକାଏ ଏବଂ ତାହାର ଦାନ୍ତ ଭାଙ୍ଗିଯାଏ । ଉନ୍ମାଦଗ୍ରସ୍ତ ମନେ କରେ ଯେ ତାହାର ଦୁଇ ପାଖରେ ଦୁଇଜଣ ବ୍ୟକ୍ତି ଚାଲି ଛନ୍ତି, ସେ ସେମାନଙ୍କଠାରୁ ଦୂରକୁ ଚାଲିଯିବା ପାଇଁ ଦ୍ରୁତଗତିରେ ଅଗ୍ରସର ହୁଏ, ମାତ୍ର କଳ୍ପିତ ବ୍ୟକ୍ତିଦ୍ୱୟ ତାହାଠାରୁ ବେଶୀ ଦ୍ରୁତ-ଗତିରେ ଯାଆନ୍ତି ବୋଲି ତାହାର ମନେ ହୁଏ । ପଥିକ ପଥରେ ଏକାକୀ ଯାଉଥିବାବେଳେ ମନେ କରେ ଯେ ତାହାର ଦୁଇପାଖରେ ଦୁଇଟା ପ୍ରକାଣ୍ଡ ଭୂତ ଚାଲିଛନ୍ତି ବା ତାହାର ପଛରେ ଗୋଟାଏ ବ୍ରହ୍ମରାକ୍ଷସ ଗୋଡ଼ାଇ ଗୋଡ଼ାଇ ଯାଉଛି ; କୌଣସି ବୃକ୍ଷ ନିକଟବର୍ତ୍ତୀ ହୁଅନ୍ତେ ସେ ପ୍ରହେଳିକାଗ୍ରସ୍ତ ହୋଇ ଦେଖେ ଯେ ବୃକ୍ଷଡାଳରେ ଗୋଟାଏ ପ୍ରକାଣ୍ଡ ଭୂତ ବସିଛି, ଏହି ଭୂତର ପାଦଦୁଇଟି ମୃତ୍ତିକା ସ୍ପର୍ଶ କରୁଛି ଏବଂ ତାହାର ମୁଣ୍ଡଟା ଗଛଉପରେ ଦେଖାଯାଉଛି । କୌଣସି ଜନପଦର ନିକଟବର୍ତ୍ତୀ ହୁଅନ୍ତେ ଗଛଡାଳରେ ବସିଥିବା ଏହି କଳ୍ପିତ ଭୂତ ପଥିକଟିକୁ କହିବାର ଶୁଣାଯାଏ, "ତୋ ମାଆ ବୁଢ଼ୀଆ ପୂଜିଥିଲା ରେ, ତୁ ମୋ ପାଲରୁ ଆଜି ବଞ୍ଚିଗଲୁ ।"

ଅଶରୀରୀ ଭୂତପ୍ରେତର ବିଦ୍ୟମାନତା ଅନେକ ପଣ୍ଡିତ ସ୍ୱୀକାର କରନ୍ତି ; ଅଠମେରିକାରେ ଏ ବିଷୟରେ ଗମ୍ଭୀର ଚର୍ଚ୍ଚା ଚାଲିଛି, ମାତ୍ର ପ୍ରହେଳିକା ବିକୃତିଗ୍ରସ୍ତର ଅକ୍ଷି ଆଗରେ ରାତିରେ କଳ୍ପିତ ଭୂତର ଆବିର୍ଭାବ ସୁନିଶ୍ଚିତ ।

ସାନ୍ନିପାତିକ ରୋଗରେ ରୋଗୀ ନିଜର ପେଷା ଅନୁଯାୟୀ ହସ୍ତପଦ ସଞ୍ଚାଳନ କରେ । ରୋଗୀ ତାହାର କଳ୍ପିତ ସ୍ତ୍ରୀକୁ ଆଲିଙ୍ଗନ କରିବାକୁ ଉଠିପଡ଼େ, ସେତେବେଳେ ତାହାର ପାଖରେ ବସିଥିବା ଶୁଶ୍ରୂଷାକାରୀମାନେ ତାହାକୁ ଦେଖାଯାନ୍ତି ନାହିଁ । ଘରର ରୁଅଗୁଡ଼ାକ ରୋଗୀକୁ ଲମ୍ବା ଲମ୍ବା ସାପ ବା ମୂଷା ପରି ଦେଖାଯାଏ । ଘରର ମଥାନରେ ପଲ ପଲ ହୋଇ ମୂଷା ବା କୌଣସି ପ୍ରକାର ଅଦ୍ଭୁତ ଜୀବ ଚାଲି ଯାଉଥିବାର ଦେଖାଯାଏ ଏବଂ ଏହା ଦେଖି ରୋଗୀ ଭୟରେ ଚିତ୍କାର କରି ଉଠେ । ରୋଗୀର ପାଟି ଶୋଷରେ ଶୁଖିଯାଏ, ମାତ୍ର ତାହାର ସମ୍ବନ୍ଧ ଇନ୍ଦ୍ରିୟମାନଙ୍କର ଶକ୍ତି ଲୋପ ହୋଇଥିବାରୁ ସେ ପାଣି ମାଗି ପାରେ ନାହିଁ । ସେ ପ୍ରହେଳିକା ଦେଖେ ଯେ ତାହାର ଅକ୍ଷିଅଗରେ ଶୂନ୍ୟରେ ଗରିଏ ସରବତ ଝୁଲୁଛି । ସେ ଏହି ସରବତଗରିକୁ ଧରିବା ପାଇଁ ଶୁଶ୍ରୂଷାକାରୀଙ୍କଠାରୁ ବାରମ୍ବାର ବାଧା ପାଇ ମଧ୍ୟ ଉଠି ପଡ଼ୁଥାଏ ।

ସର୍ବପ୍ରକାର ପ୍ରହେଳିକା ଓ ଭ୍ରମ ସମ୍ମୋହାବସ୍ଥା ( Hipnotic state ) ବା ଅର୍ଦ୍ଧଚେତନାବସ୍ଥାର ପରିଣାମ । ଅର୍ଦ୍ଧଚେତନାବସ୍ଥା ନ ଘଟିଲେ କେହି ପ୍ରହେଳିକା ଦେଖେ ନାହିଁ ବା ଭ୍ରମ କରେ ନାହିଁ । ସ୍ୱପ୍ନରେ ମଧ୍ୟ ଲୋକ ନାନାବିଧ କଳ୍ପିତ ଦୃଶ୍ୟ ଦେଖେ ଏବଂ ନାନାବିଧ କଳ୍ପିତ ଆଚରଣ ପ୍ରକାଶ କରେ । ସ୍ୱପ୍ନରେ ମଣିଷ ପ୍ରଳାପ କରେ ; ସ୍ୱପ୍ନରେ ପ୍ରଳାପ, କଳ୍ପିତ ଦୃଶ୍ୟ ବା କଳ୍ପିତ ଆଚରଣମାନ ମଧ୍ୟ ପ୍ରହେଳିକା ବା ଭ୍ରମର ଅନ୍ତର୍ଗତ ।

ସମ୍ମୋହାବସ୍ଥାରେ ଗୋଟିଏ ପ୍ରକାର ବସ୍ତୁ ବା ଦୃଶ୍ୟ ଅନ୍ୟ ଏକ ପ୍ରକାର ବସ୍ତୁ ବା ଦୃଶ୍ୟରୂପେ ପ୍ରତୀତ ହୁଏ । ଦୃଷ୍ଟାନ୍ତସ୍ୱରୂପ ଖଣ୍ଡିଏ ଅମୃତ୍ ଗୋଟିଏ ଗୋବର ପୋକ ପରି ଦେଖାଗଲେ ଘୃଣାର ଉଦ୍ରେକ ହୁଏ; ପଶ୍ଚାନ୍ତରରେ ଗୋଟାଏ ଗୋବରପୋକ ଅମୃତ୍ ପରି ଦେଖାଗଲେ ପାଟିରୁ ଲାଳ ବୁହେ ଏବଂ ଉନ୍ମାଦଗ୍ରସ୍ତ ବ୍ୟକ୍ତି ଭ୍ରମର ବଶବର୍ତ୍ତୀ ହୋଇ ଗୋବରପୋକଟାକୁ ଖାଇଦେଇ ପାରେ । ସେ ଖାଇବା ପରେ ମଧ୍ୟ ଜାଣି ପାରେ ନାହିଁ ଯେ ସେ ଗୋଟାଏ ଦୁର୍ଗନ୍ଧ ଗୋବରପୋକ ଖାଇଲା ବୋଲି ।

ପୂର୍ବ ପରିଚ୍ଛେଦରେ କୁହାଯାଇଅଛି ଯେ ପ୍ରତ୍ୟେକ ମାନସିକ ବିକୃତିର ମୂଳରେ "କାମନାର ଅତୃପ୍ତି ବା ଅବରୋଧ, କ୍ରୋଧ ଓ ଭୟ, ସମ୍ମୋହ, ସ୍ମୃତିବିଭ୍ରମ ଏବଂ ବୁଦ୍ଧିଭ୍ରଂଶ" ଏହି କେତୋଟି ମାନସିକ ଅବସ୍ଥା ଓତପ୍ରୋତଭାବରେ ରହିଥାଏ । ସର୍ବାଧିକ ପ୍ରହେଳିକା ଓ ଭ୍ରମରେ ସମ୍ମୋହ ଏବଂ ତାହାର ପୂର୍ବବର୍ତ୍ତୀ ଅବସ୍ଥାମାନ ଖୁବ୍ ବେଶୀ ଲକ୍ଷିତ ହୁଏ ।

ପ୍ରହେଳିକାଗ୍ରସ୍ତ ଓ ଭ୍ରମଶୀଳ ସାନ୍ନିପାତିକ ରୋଗୀ ଏବଂ ଉନ୍ମତ୍ତ ବ୍ୟକ୍ତିଠାରେ ଅନେକ ସମୟରେ ଅସୀମ ଶାରୀରିକ ବଳ ଦେଖାଯାଏ । ସାନ୍ନିପାତିକ ରୋଗୀ ପ୍ରହେଳିକା ଦେଖି ହଠାତ୍ ମାରି ଉଠିପଡ଼େ ଏବଂ ଦ୍ରୁତଗତିରେ ଦ୍ୱାରଆଡ଼କୁ ଅଗ୍ରସର ହୁଏ । ଦୁଇ ତିନି ଜଣ ବଳିଷ୍ଠ ବ୍ୟକ୍ତି ମଧ୍ୟ ତାହାକୁ ରୋକି ପାରନ୍ତି ନାହିଁ ।

---

# ଏକାଦଶ ପରିଚ୍ଛେଦ

## ଅକାଳପକ୍ୱତା ଏବଂ ବାଳଚାପଲ୍ୟ

## ( Precocity and Childishness )

ଅତି ଅଳ୍ପ ବୟସର ବାଳକଠାରେ ବୃଦ୍ଧବ୍ୟକ୍ତିର ଆଚରଣ ଦେଖାଦେଇ ପାରେ । ବୃଦ୍ଧବ୍ୟକ୍ତି ପରି ସେ ଅତି ଗମ୍ଭୀର ହୋଇ ପଡ଼େ ଏବଂ ଜ୍ଞାନଗର୍ଭକ କଥାମାନ କହେ । ସେ ଜନ୍ମ, ମୃତ୍ୟୁର ରହସ୍ୟ, ଧର୍ମ ଓ ଅଧର୍ମ, ନୀତି ଓ ଅନୀତି ସମ୍ବନ୍ଧରେ କଥାମାନ କହି ଶ୍ରୋତାମାନଙ୍କୁ ମୁଗ୍ଧ ଓ ଚକିତ କରିଦିଏ । ଶ୍ରୋତାମାନେ ଭାବନ୍ତି, "ଏତେ ଅଳ୍ପ ବୟସରେ ଏତେ ବଡ଼ ବଡ଼ କଥାମାନ ଏ କେଉଁଠୁ ଜାଣିଲା ?" ଏହି ବାଳକଟିକୁ ଅତିମାନୁଷୀଶକ୍ତିସମ୍ପନ୍ନ ( Superman ) କିମ୍ବା ପ୍ରତିଭାଶାଳୀ (genius) ବୋଲି କେହି କେହି ଭ୍ରମ କରି ପାରନ୍ତି । ମାତ୍ର ସେ ଅତିମାନୁଷ ନୁହେଁ କି ପ୍ରତିଭାଶାଳୀ ବି ନୁହେଁ । ବାଳକର ବୃଦ୍ଧସୁଲଭ ଆଚରଣ ପଛରେ ଏକପ୍ରକାର ମାନସିକ ବିକୃତି ରହିଅଛି । ଏହି ମାନସିକ ବିକୃତିକୁ ଅକାଳପକ୍ୱତା କୁହାଯାଏ ।

ଅକାଳପକ୍ୱତାଗ୍ରସ୍ତ ବ୍ୟକ୍ତିର ପ୍ରକୃତ ବୟସ ଯାହା, ତାହାଠାରୁ ସେ ବେଶୀ ବୟସର ମାଲୁମ ହୁଏ ଏବଂ ତାହାଠାରେ ଅକାଳ ବାର୍ଦ୍ଧକ୍ୟର ଲକ୍ଷଣ ପରିସ୍ଫୁଟିତ ହୁଏ । ୭।୮ ବର୍ଷ ବୟସରେ ମଧ୍ୟ ତାହାର ମସ୍ତକରେ ପକ୍ୱକେଶ ଦେଖାଯାଏ । ୧୫।୧୬ ବର୍ଷ ବୟସରେ ମଧ୍ୟ ସେ ନଇଁ ନଇଁ ଚାଲେ । ପଚିଶ ତିରିଶ ବର୍ଷ ବୟସ ନ ହେଉଣୁ ତାହାର ଦାନ୍ତ ହଲିବାକୁ ଆରମ୍ଭ କରେ ଏବଂ ଚାଳିଶ ନ ପୂରୁଣୁ ସେ ପାକୁଆ ହୋଇଯାଏ । ଅକାଳପକ୍ୱ ବ୍ୟକ୍ତି ବଡ଼

ଚିନ୍ତାଶୀଳ ଏବଂ ବହୁତ ଧରଣର ଦାର୍ଶନିକ। ଅକାଳପକ୍ୱ ବ୍ୟକ୍ତିଠାରେ ଯୌବନ ଶୀଘ୍ର ଦେଖାଦେଇ ଶୀଘ୍ର ଅନ୍ତର୍ହିତ ହୋଇ ଯାଏ। ଯେଉଁ ହାବ ଭାବ, ଗୃହଚଳନ ଓ ଆଚରଣମାନ ଯେଉଁ ବୟସରେ ଦେଖାଯିବାର କଥା, ସେସବୁ ସେହି ବୟସ ଆସିବାର ବହୁତ ଆଗରୁ ଦେଖାଯାଏ। ଦୃଷ୍ଟାନ୍ତସ୍ୱରୂପ ସାଧାରଣ ବାଳକ-ବାଳିକାମାନେ କ୍ରୀଡ଼ାପ୍ରିୟ, ମାତ୍ର ଅକାଳପକ୍ୱ ବାଳକ ଖେଳରେ ନ ମାତି ଗମ୍ଭୀର ଚିନ୍ତାମଗ୍ନ ଓ ବିଷଣ୍ଣ ଦେଖାଯାଏ, ଯଦିଓ ତାହାର ଭିତାର କୌଣସି ପ୍ରକାର ବୈଷୟିକ ଅଭାବ ନ ଥାଏ।

ଛୋଟ ଛୋଟ ବାଳକବାଳିକାଙ୍କଠାରେ ପରିଷ୍କାର ପରିଚ୍ଛନ୍ନ ହେବାର ସ୍ପୃହା ବଡ଼ ଜୋର ଦେଖାଯାଏ ନାହିଁ। ନିଜକୁ ପରିଷ୍କାର ପରିଚ୍ଛନ୍ନ କରିବାର ବଳବତୀ ଇଚ୍ଛା ୧୫।୧୬ ବର୍ଷ ବୟସରୁ ଦେଖାଯାଏ। ମାତ୍ର ପରିଷ୍କାର ପରିଚ୍ଛନ୍ନ ହେବାପାଇଁ ୭।୮ ବର୍ଷ ବୟସରେ ଅକାଳପକ୍ୱ ବାଳକଟି ଅଦମ୍ୟ ଚେଷ୍ଟା କରେ। ଲୁଗା ଅପରିଷ୍କାର ହେଲେ, ନାକରୁ ଶ୍ଳେଷ୍ମା ଗଡ଼ିଲେ ସେ ଲଜ୍ଜାରେ ସ୍କୁଲକୁ ଯାଏ ନାହିଁ। ନିଜର ପିତା ମାତା, ଭ୍ରାତା ବା ଭଗିନୀ ଅସଂଯତ ଭାବରେ ବସ୍ତ୍ର ପରିଧାନ କରିଥିଲେ ସେମାନଙ୍କୁ ତୀବ୍ର ଭର୍ତ୍ସନା କରେ। ୬।୭ ବର୍ଷ ବୟସରୁ ୧୧।୧୨ ବର୍ଷ ବୟସର ବାଳକ ବଡ଼ ଅସ୍ମାବାଦୀ ବା ସ୍ୱାର୍ଥପର (Egotist), ସେ ବଡ଼ ଆପଣାସାର୍ଥକ, ନିଜର ସୁଖ ଛଡ଼ା ଅନ୍ୟ କାହାର କଥା ସେ ଭାବେ ନାହିଁ। ସେ ବଡ଼ ଠକିଲା। ଛେଳିପାଠି ପରି ତାହାର ପାଟି ସର୍ବଦା ଚାଲୁଥାଏ। ତାହାର ପକେଟରେ କୌଣସି ନା କୌଣସି ଫଳ ବା ଚୋଳି ରହୁଥାଏ; ତାହାର ଅଣ୍ଟିରେ କିଛି ନା କିଛି ଭୁଜା ରହୁଥାଏ। ସେ ଅନ୍ୟ ବଗିଚାରେ ଲୁଚି କରି ପଶି ଫଳ ବା ଚୋଳି ଚୋରି କରେ; ମାତ୍ର

ଏହି ବୟସର ଗୋଟିଏ ଅକାଳପକ୍ୱ ବାଳକକୁ ଲକ୍ଷ୍ୟ କର; ଦେଖିବ, ତାହାର ବାପା ଯଦି ମାଆକୁ ଗାଳି ଦିଏ, ସେ ମାଆ ଲାଗି ଲଢ଼େ ; ଭାଇମାନଙ୍କ ମଧ୍ୟରୁ ଯଦି ଗୋଟିଏ ଅନ୍ୟଠାରୁ କିଛି ଛଡ଼ାଇ ଖାଇଯାଏ ବା ନେଇଯାଏ, ତେବେ ସେ ଏହାକୁ ଘୋର ଅନ୍ୟାୟ ମନେ କରି ମାଆ ଆଗରେ ଫେରିାଦ କରେ ଏବଂ ଅନ୍ୟାୟର ପ୍ରତିକାର ପାଇଁ ଝୁଷା ଝୁଷି କରେ । ଝିକଲା ଭାଇମାନଙ୍କୁ ସେ ଗାଳିଦିଏ । ପରର ଦୁଃଖ ବା କଷ୍ଟ ଦେଖିଲେ ତାହାର ନିଜର ବିଷାଦ ବଢ଼େ । ପରିବାରରେ କାହାରି ମୃତ୍ୟୁଦୃଶ୍ୟ ଦେଖିଲେ ସେ ଦିନରାତି ବସି ମୃତ୍ୟୁବିଷୟ ଭାବନା କରେ ଏବଂ ବିଷାଦରେ ଶୁଖିଯାଏ ।

କୈଶୋରାବସ୍ଥା ଆସିବା ପୂର୍ବରୁ ବାଳକବାଳିକାମାନେ ନିଃସଙ୍କୋଚରେ ପରସ୍ପର ସହ ମିଶାମିଶି ହୋଇ କ୍ରୀଡ଼ା କରନ୍ତି, କାରଣ ସେମାନଙ୍କଠାରେ ରମଣାତ୍ମକ ହାବଭାବ ଓ ଲଜ୍ଜାଦି ପ୍ରକଟିତ ହୋଇ ନ ଥାଏ । ମାତ୍ର ଗୋଟିଏ ଆଠବର୍ଷ ବୟସର ଅକାଳପକ୍ୱ ବାଳକଠାରେ ଯୌବନସମ୍ବନ୍ଧୀୟ ଧାରଣା ଓ ଜ୍ଞାନ ବେଶ ଥାଏ । ଏଣୁ ସେ ସମବର୍ଷୀୟ ବାଳିକାଙ୍କ ସଙ୍ଗରେ ମିଶାମିଶି କରିବାକୁ ସଙ୍କୋଚ ବୋଧ କରେ । ତାହାର ଭାଇଭଉଣୀମାନେ ପରସ୍ପର ସହ କ୍ରୀଡ଼ା କଲେ ସେ ସେମାନଙ୍କୁ ଗାଳି ଦିଏ ଏବଂ ନିଜର ପିତାମାତାଙ୍କୁ ଜଣାଏ । ପିତା ମାତା ତାହାର ଏହି ନୀତିଗର୍ଭିକ କଥା ଶୁଣି ମୃଦୁକହସା ହସି ତାହାକୁ ପ୍ରବୋଧ ଦିଅନ୍ତି ।

**ବାଲ୍ୟଗ୍ରପଲ୍ୟ**—ଯେଉଁ ବୟସରେ ଯେଉଁ ଆଚରଣ ଦେଖାଯିବାର କଥା, ତାହା ଦେଖା ନ ଯାଇ ନିମ୍ନତର ବୟସର ଆଚରଣ ଦେଖାଗଲେ ଏହି ପ୍ରକାର ଆଚରଣକୁ ବାଲସୁଲଭ ଆଚରଣ କୁହାଯାଏ । ୧୮।୧୯ ବର୍ଷ ବୟସର ତରୁଣ ଯୁବକ ୭ ବର୍ଷ

ବୟସର ବାଳକ ପରି ହାବଭାବ ପ୍ରକାଶ କରି ପାରେ । ପ୍ରୌଢ଼ ବ୍ୟକ୍ତିଠାରେ ସମଲିଙ୍ଗୀ ବା ହସ୍ତମୈଥୁନାଦି ବିକୃତ ଆଚରଣମାନ ଦେଖାଦେଇ ପାରେ; ଉକ୍ତ ପ୍ରୌଢ଼ବ୍ୟକ୍ତିଟି ବାଲଗ୍ରୃପଲ୍ଲ-ବିକୃତଗ୍ରସ୍ତ । ସମଲିଙ୍ଗୀ ମନୋବୃତ୍ତି କୈଶୋରାବସ୍ଥାରେ ସାମାନ୍ୟ କାଳ ଦେଖା ଦେଇ ତିରୋହିତ ହୋଇଯାଏ ଏବଂ ଉନ୍ନତ ସ୍ତରର ବିପରଲିଙ୍ଗୀ ମନୋବୃତ୍ତିର ( Love for the opposite sex ) ବିକାଶ ଘଟେ । ମାତ୍ର ଏହି ସମଲିଙ୍ଗୀ ମନୋବୃତ୍ତି ଉତ୍ତର ବୟସରେ ପ୍ରୌଢ଼ବ୍ୟକ୍ତି-ଠାରେ ଦେଖାଗଲେ ବୁଝିବାକୁ ହେବ ଯେ ଉକ୍ତ ବ୍ୟକ୍ତିର ରମଣାତ୍ମକ ସ୍ତରରେ ମାନସିକ ଉନ୍ନତି ଘଟି ନାହିଁ । ନିମ୍ନସ୍ତରର କୌଣସି ଆଚରଣ ଉଚ୍ଚତର ବୟସରେ ଦେଖାଗଲେ ତାହାକୁ ଲାଖିଯିବା ( Fixation ) କୁହାଯାଏ । ପୂର୍ବୋକ୍ତ ପ୍ରୌଢ଼ବ୍ୟକ୍ତି କୈଶୋରର ସମଲିଙ୍ଗୀ ସ୍ତରକୁ ପାର ହୋଇ ଆଗେଇ ଯାଇ ପାରି ନାହିଁ ; ତାହାର ରମଣାତ୍ମକ ଗତିଶୀଳତା ଏହି ସ୍ତରରେ ଲାଖି ଯାଇଅଛି । ବାଲଗ୍ରୃପଲ୍ଲ-ବିକୃତରେ କୌଣସି ନିମ୍ନସ୍ତରର ଆଚରଣରେ ଅଟକିଯିବା ବା ଲାଖିଯିବାଟା ବେଶୀ ଦେଖାଯାଏ ।

ଯୌବନ ବହୁପୂର୍ବରୁ ଅତିକ୍ରାନ୍ତ ହୋଇଥିଲେ ମଧ୍ୟ ବୃଦ୍ଧ ବ୍ୟକ୍ତି ମଥାରେ ସୁବାସିତ ତୈଳ ମର୍ଦ୍ଦନ କରେ; ପକ୍ୱକେଶରେ କଲପ ଦିଏ ଓ ବିଳାସଭରି ବହୁମୂଲ୍ୟ ପୋଷାକ ପରିଚ୍ଛଦ ପରିଧାନ କରି ଯୁବକଜନୋଚିତ ହାବଭାବ ପ୍ରକାଶ କରେ । ତାହାର ଅଙ୍ଗ ପ୍ରତ୍ୟଙ୍ଗ ଓ ଇନ୍ଦ୍ରିୟାଦି ଶିଥିଳ ହୋଇଯାଇଥିଲେ ମଧ୍ୟ ସେ ଏହା ମାନିବାକୁ ନାରାଜ ହୁଏ ଏବଂ ସାହସର ସହିତ ଜରାସଙ୍ଗରେ ସଂଘର୍ଷ କରେ । ତାହାକୁ ଯଦି କୌଣସି ବ୍ୟକ୍ତି ତାହାର ବୟସ କେତେ ହେଲଣି ବୋଲି ପଚାରେ, ସେ ନିଜର ବୟସକୁ କମ୍

କରି କହେ । ସେ ରସିକତା ପ୍ରକାଶ କରି କିଶୋରୀ ବାଳିକାମାନଙ୍କ ସଙ୍ଗରେ ନାନାବିଧ ଥଟ୍ଟା ପରିହାସରେ ରତ ହୁଏ । ଉକ୍ତ ବୃଦ୍ଧ ବ୍ୟକ୍ତିର ଏହି ପ୍ରକାର ଆଚରଣ ଯୌବନର ସ୍ତରରେ ଲଖିଯିବାରୁ ଘଟେ ।

ନିମ୍ନସ୍ତରରେ ଅଟକିଗଲେ ବା ଲଖିଗଲେ ଯେପରି କୌଣସି ବ୍ୟକ୍ତିର ବାଳଗ୍ରୃପଲ୍ଧିବିକୃତି ଘଟେ, ଠିକ୍ ସେହିପରି କୌଣସି ବ୍ୟକ୍ତିର ଆଚରଣ ନିମ୍ନସ୍ତରକୁ ଖସି ଆସି ପାରେ । ନିମ୍ନସ୍ତରକୁ ଖସିଯିବା ମଧ୍ୟ (Regression) ବାଳଗ୍ରୃପଲ୍ଧିର ଅନ୍ୟ ଏକ କାରଣ । କୌଣସି ବ୍ୟକ୍ତି ବିଶେଷତଃ ପ୍ରବୀଣ ବୃଦ୍ଧବ୍ୟକ୍ତିର ପାରିବାରିକ ଦୁଃଖମୟ ଘଟଣା ଘଟିଲେ ବା ମନର ଅବସାଦକାରୀ ଅନ୍ୟ କୌଣସି ଶୋଚନୀୟ ଘଟଣା ଘଟିଲେ କିମ୍ବା ତାହାର କୌଣସି ପ୍ରବଳ କାମନାର ପ୍ରତିବନ୍ଧକ ଘଟିଲେ ଉକ୍ତ ବୃଦ୍ଧ ବ୍ୟକ୍ତିର ମନ ନିମ୍ନସ୍ତରକୁ ଖସିଯାଇ ପାରେ ଏବଂ ସେ ଛୋଟ ବାଳକ ପରି ଆଚରଣ ପ୍ରକାଶ କରି ପାରେ । ଏହି ପ୍ରକାର ବୃଦ୍ଧବ୍ୟକ୍ତି ଏବଂ ଗୋଟିଏ ଛୋଟ ବାଳକ ମଧ୍ୟରେ ଆକୃତିଗତ ଏବଂ ବୟସଗତ ପ୍ରଭେଦ ଥିଲେ ମଧ୍ୟ ଆଚରଣରେ କୌଣସି ପାର୍ଥକ୍ୟ ଦେଖାଯାଏ ନାହିଁ । ନିମ୍ନସ୍ତରରେ ବାଳସୁଲଭ ଆଚରଣ ସ୍ତରକୁ ଖସିଯାଇଥିବା ଗୋଟିଏ ବୃଦ୍ଧବ୍ୟକ୍ତି ଗୋଟିଏ ଛୋଟ ବାଳକ ପରି ଅଭିମାନ ଓ ଅଝଟ କରେ, ତାହାର କଥା ନ ରହିଲେ ସେ କନ୍ଦାକଟା କରେ ଏବଂ ରୁଷି କରି ଖାଏ ନାହିଁ । ଛୋଟ ଛୋଟ ବାଳକ ବାଳିକାଙ୍କ ସଙ୍ଗରେ ସେ ହସଖୁସି ହୁଏ ଏବଂ ଲୁଚକାଳି ଖେଳେ । ବଡ଼ ମଣିଷଙ୍କ ସଙ୍ଗରେ ସେ ବେଶୀ କଥାବାର୍ତ୍ତା କରିବାକୁ ପସନ୍ଦ କରେ ନାହିଁ । ତାହାର ସର୍ବପ୍ରକାର ଆଲାପସଂଲାପ ଛୋଟ ଛୋଟ ପିଲାମାନଙ୍କ ସଙ୍ଗରେ । ସେ ତାହାର ବୟସ୍କ ପୁତ୍ରମାନଙ୍କ ସଙ୍ଗରେ

ବିଷୟ ଅଶୟର ରକ୍ଷଣାବେକ୍ଷଣ ଓ ବ୍ୟବସ୍ଥା ସମ୍ବନ୍ଧରେ ପରାମର୍ଶ ନ କରି ଛୋଟ ଛୋଟ ନାତି ନାତୁଣୀଙ୍କ ସଙ୍ଗରେ କ୍ରୀଡ଼ା, ରହସ୍ୟ ଓ ପରିହାସରେ କାଳାତିପାତ କରେ । ଏହି ପ୍ରକାର ବାଳସୁଲଭ ଆଚରଣର ମୂଳରେ ଯେଉଁ ମନୋବୃତ୍ତି ଥାଏ ତାହାକୁ ଜେଜେ ମନୋବୃତ୍ତି (Grand fatherly attitude) କୁହାଯାଏ । ଅଧିକାଂଶ ବର୍ଷୀୟାନ୍ ବ୍ୟକ୍ତିଙ୍କ ଠାରେ ସାଧାରଣତଃ ଏହି ମନୋବୃତ୍ତି ଆସି-ଯାଏ । ସେମାନଙ୍କର ମସ୍ତିଷ୍କରେ ଏତେ ଶିଥିଳତା (Senility) ଆସିଯାଏ ଏବଂ ମାନସିକ ଶକ୍ତିର ଏତେ ହ୍ରାସ ହୋଇଯାଏ ଯେ, ସେମାନେ କୌଣସି ପ୍ରକାର ଗମ୍ଭୀର କଳ୍ପନାମୂଳକ ବା ଚିନ୍ତାମୂଳକ କାର୍ଯ୍ୟରେ ମନୋନିବେଶ କରି ପାରନ୍ତି ନାହିଁ । ଏହି ଅଲଙ୍ଘନୀୟ ପ୍ରକୃତି ଆମ୍ଭମାନଙ୍କୁ ଏହାହିଁ ଶିକ୍ଷା ଦେଉଛନ୍ତି ଯେ ଜରାର ଆଗମନ ପୂର୍ବରୁ, ମସ୍ତିଷ୍କର ଶିଥିଳତା ବା ମାନସିକ ଶକ୍ତିର ହ୍ରାସ ଘଟିବା ପୂର୍ବରୁ ଆମ୍ଭମାନଙ୍କଠାରେ ଯେଉଁ ଯେଉଁ ଶକ୍ତି ନିହିତ ଅଛି, ତାହାର ଯଥାର୍ଥ ସଦ୍‌ବ୍ୟବହାର କରିବାକୁ ହେବ । ଏହି ଶକ୍ତିକୁ ଭବିଷ୍ୟତରେ ଖଟାଇବାର କଳ୍ପନା କରି ବର୍ତ୍ତମାନ ନିଃସଙ୍କୋଚରେ ଏବଂ ଆଳସ୍ୟରେ କାଳଯାପନ କଲେ ହେବ ନାହିଁ । କାରଣ ବାର୍ଦ୍ଧକ୍ୟ ଆସିବା ପୂର୍ବରୁ ମାନସିକ ଶକ୍ତିକୁ କାର୍ଯ୍ୟରେ ଲଗାଇବା ପାଇଁ ଯେଉଁ ସୁଯୋଗ ସୁବିଧା ଥାଏ, ବାର୍ଦ୍ଧକ୍ୟ ଆସିଗଲା ପରେ ସେ ସୁଯୋଗ ସୁବିଧା ଆଉ ରହେ ନାହିଁ ।

ସମାଜର ପ୍ରତ୍ୟେକ ବ୍ୟକ୍ତି ଜରାର ଆକ୍ରମଣପୂର୍ବରୁ ପଚିଶ ବା ପଞ୍ଚାବନ ବୟସ ମଧ୍ୟରେ ତାହାର ସମୁଦାୟ ଶକ୍ତିର ସଦ୍‌ବ୍ୟବହାର କିପରି କରିବ ଏବଂ ସମାଜର ଗଳଗ୍ରହ ନ ହୋଇ କିପରି ପରିପୋଷକ ହେବ, ଏହାହିଁ ପ୍ରକୃତ ଶିକ୍ଷାର ଉଦ୍ଦେଶ୍ୟ । ପ୍ରାଚୀନ ଭାରତୀୟ ଶିକ୍ଷାର ଏହାହିଁ ଉଦ୍ଦେଶ୍ୟ ଥିଲା ।

ଜରାର ପ୍ରାଥମିକ ଆକ୍ରମଣରେ ମସ୍ତିଷ୍କର ଶିଥିଳତା ଏବଂ ମାନସିକ ଶକ୍ତିର ହ୍ରାସ ଘଟିଲେ ମଧ୍ୟ ଏହା ଲକ୍ଷ୍ୟ କରିବାର ବିଷୟ ଯେ କୌଣସି କୌଣସି ବୃଦ୍ଧ ବ୍ୟକ୍ତିର ମସ୍ତିଷ୍କର ସତେଜ ଭାବ ଓ ମାନସିକ ଶକ୍ତିର ପ୍ରଖରତା କେତେକ କାଳ ପରେ ପୁଣି ଫେରି ଆସେ । କ୍ଷୀଣ ସ୍ମୃତିଶକ୍ତି ପୁଣି ସତେଜ ହୁଏ; ବୁଦ୍ଧିର ଦୁର୍ବଳତା କ୍ରମଶଃ ହ୍ରାସ ହୋଇଯାଏ । ଇନ୍ଦ୍ରିୟଗଣ ପୁଣି ତେଜ ଉଠନ୍ତି । ବୃଦ୍ଧର ବାଲଗୃପଲ୍ୟବିକୃତି ଦୂର ହୋଇଯାଏ, ପୁନଶ୍ଚ ତାହାଠାରେ ଗାମ୍ଭୀର୍ଯ୍ୟ ଓ ପ୍ରଶାନ୍ତଭାବ ଦେଖାଦିଏ । ଚାଳିଶ ବାୟାଳିଶ ବର୍ଷ ବୟସ ମଧ୍ୟରେ କାହାର କାହାର ଦୃଷ୍ଟିଶକ୍ତି କ୍ଷୀଣ ହୋଇଯାଏ ଏବଂ ଆଖିକୁ ଜାଲଜାଲିଆ ଦେଖାଯାଏ । ଏହି ପ୍ରକାର ଦୃଷ୍ଟିଶକ୍ତିର ହ୍ରାସକୁ ଚାଳିଶା ଦୋଷ କୁହାଯାଏ । ମାତ୍ର ଚଷମା ବ୍ୟବହାର ନ କରି ଏହି କଷ୍ଟକୁ ଟିକିଏ ସହିଗଲେ ଦୃଷ୍ଟିଶକ୍ତିର କ୍ଷୀଣତା ଅପେ ଅପେ ଚାଲିଯାଏ ଏବଂ ଆଉ ଦୃଷ୍ଟିଶକ୍ତିର ହ୍ରାସ ଘଟେ ନାହିଁ ବା ଚଷମା ବ୍ୟବହାର କରିବାକୁ ପଡ଼େ ନାହିଁ । ଚାଳିଶା ଦୋଷ ପରି ଜରାଜନିତ ଶିଥିଳତା ମଧ୍ୟ ( Senility ) କିଛିଦିନ ପରେ ହ୍ରାସପ୍ରାପ୍ତ ହୋଇ ପାରେ ।

ଅକାଳପକ୍ୱତା ଏବଂ ବାଲଗୃପଲ୍ୟ ଯୋଡ଼ିଏ ମାନସିକ ବିକୃତି ଏବଂ ଏ ଦୁହିଙ୍କର କାରଣ ମଧ୍ୟ ଏକା; ଅର୍ଥାତ୍ କୌଣସି ପ୍ରବଳ କାମନାର ଅବରୋଧ ଓ ଅତୃପ୍ତି । ପ୍ରଭେଦ ଏତିକି ଯେ କୌଣସି ପ୍ରବଳ କାମନାର ଅବରୋଧ ଘଟିଲେ, ଯେଉଁ ସ୍ତରରେ ତାହାର ଅବରୋଧ କରାଯାଏ, ସେହି ସ୍ତରରେ ତାହା ଲାଗିଯାଇ ପାରେ ବା କୌଣସି ନିମ୍ନସ୍ତରକୁ ଖସିଯାଏ; ଏହି କ୍ଷେତ୍ରରେ ଏହା ବାଲଗୃପଲ୍ୟ ବିକୃତିରେ ପରିଣତ ହୁଏ । ପକ୍ଷାନ୍ତରେ କୌଣସି ପ୍ରବଳ କାମନାର

ଅବରୋଧ ଘଟିଲେ ତାହା କୌଣସି ଲକ୍ଷଣରକୁ ଯାଇ ସେହି ସ୍ତରର ଆଚରଣ ପ୍ରକାଶ କରେ; ଏହାହିଁ ଅକାଳପକ୍ୱତା । ଜ୍ୟେଷ୍ଠ ଶିଶୁଟିର ଅପରିଷ୍କାର ରହିବାର ଇଚ୍ଛାରେ ତାଡ଼ନାଦି ଫଳରେ ପ୍ରବଳ ବାଧା ଘଟିଲେ ସେ ଖୁବ୍ ପରିଷ୍କାର ପରିଚ୍ଛନ୍ନ ରହେ ଏବଂ ନିଜର ପିତା ମାତା ବା ପରିବାର ଅନ୍ୟ କେହି ଅପରିଷ୍କୃତ ଅପରିଚ୍ଛନ୍ନ ରହିଲେ ସେମାନଙ୍କୁ ଭର୍ତ୍ସନା କରେ; ଏହା ଏକ ଲକ୍ଷଣରର ଆଚରଣ, ମାତ୍ର ଅସ୍ୱାଭାବିକ; ଯେଣୁ ଏହା ଶୈଶବରେ ଦେଖାଯିବାର କଥା ନୁହେଁ ।



# ଦ୍ୱାଦଶ ପରିଚ୍ଛେଦ

## ବନ୍ଧନ ଏବଂ ନିମ୍ନାଭିମୁଖୀ ଗତି

## ( Fixation and Regression )

ବୟସ ଅନୁସାରେ ପ୍ରତ୍ୟେକ ବ୍ୟକ୍ତିର ସାଧାରଣତଃ ଛଅ ପ୍ରକାର ମାନସିକ ଅବସ୍ଥା ଦେଖାଯାଏ । ଯଥା—ବାଲ୍ୟ, ପୌଗଣ୍ଡ, କୈଶୋର ଯୌବନ, ପ୍ରୌଢ଼ ଏବଂ ବାର୍ଦ୍ଧକ୍ୟ । ବାଲ୍ୟାବସ୍ଥା (Childhood) ସାଧାରଣତଃ ଜନ୍ମଠାରୁ ୫।୬ ବର୍ଷ ବୟସ ପର୍ଯ୍ୟନ୍ତ ରହେ । ଶିଶୁ ଏହି ଅବସ୍ଥାରେ ବଡ଼ ନିଃସହାୟ ଥାଏ, ଏଣୁ ତାହାକୁ ପିତାମାତାଙ୍କ ଉପରେ ନିର୍ଭର କରିବାକୁ ପଡ଼େ; ଏହି ଅବସ୍ଥାରେ ତାହାର ଆଚରଣମାନ ପ୍ରବୃତ୍ତିମୂଳକ (Instinctive) ହୁଏ ; ଏଣୁ ତାହାର ଆଚରଣମାନ ଅହେତୁକୀ (Irrational) ଦେଖାଯାଏ । ଶିଶୁ ଅତି ଅଭିମାନୀ ଓ କ୍ରୋଧଶୀଳ (Impulsive) ହୁଏ । ଜଡ଼ ଓ ଚେତନବସ୍ତୁ ମଧ୍ୟରେ ତାହାର ଧାରଣା ପରିସ୍ଫୁଟ ହୋଇ ନ ଥାଏ; ନିଜର କଣ୍ଢେଇକୁ ସେ ନିଜେ ଶାସନ କରେ ଓ ସ୍ନେହ ଦେଖାଏ । ସେ କଣ୍ଢେଇକୁ ନିଜର ପୁଅ ବା କନ୍ୟା ମନେ କରି ନିଜେ ତାହାର ପିତା ବା ମାତାର ସ୍ଥାନ ଅଧିକାର କରେ; ଏହି ସମୟରେ ସେ ଦିବା-ସ୍ୱପ୍ନ (Day dream) ଦେଖେ ଏବଂ ଅସମ୍ଭବ କଳ୍ପନା (Phantasy) କରେ । ଆକାଶର ଭାସମାନ ମେଘକୁ ସେ ଜୀବନ୍ତ ବ୍ୟକ୍ତିବିଶେଷ ମନେ କରେ ଏବଂ ଚନ୍ଦ୍ରମାକୁ ନିକଟବର୍ତ୍ତୀ ମନେ କରି ତାହାକୁ ପାଇବାକୁ ଓ ଧରିବାକୁ ଇଚ୍ଛା କରେ । ଶିଶୁ ଆତ୍ମଲିଙ୍ଗୀ (Autosexual) ଏବଂ ବିପରୀତଲିଙ୍ଗୀ (Hitero-Sexual) । ଏହି ସମୟରେ ଶିଶୁର ଲିଙ୍ଗମଣ୍ଡଳ ତାହାର ମୁଖ, ପାୟୁ ଏବଂ ଉପସ୍ଥରେ ପର୍ଯ୍ୟବସିତ ଥାଏ ।

ପ୍ରେ ନିଜର ମୁଖରେ ଅଙ୍ଗୁଷ୍ଠି ପୁରାଇ ଚୁଷେ ଏବଂ ମଳମୂତ୍ରର ବେଗ ରୋଧ କରେ ଏବଂ ନିଜର ମଳମୂତ୍ରକୁ ଘଣ୍ଟା ଘଣ୍ଟି କରେ । ଏହି ଆଚରଣମାନ ଆତ୍ମକାମୀ; ଅର୍ଥାତ୍ ଶିଶୁ ଆପଣା ସାଥିରେ ରତିକ୍ରିୟା ସମ୍ପାଦନ କରେ । ଶିଶୁପୁତ୍ରର ସ୍ନେହ ମାତାଠାରେ ବେଶୀ ଦେଖାଯାଏ; ପରନ୍ତୁ ଶିଶୁକନ୍ୟା ପିତାକୁ ଅଧିକ ସ୍ନେହ କରେ; ଶିଶୁର ଏହି ଆଚରଣମାନ ବିପରୀତକାମୀ ( Love for the opposite sex ) ।

ସୁସ୍ଥ ବା ବାଲ୍ୟାବସ୍ଥାର ଅତିକ୍ରମ ପରେ ପୌଗଣ୍ଡାବସ୍ଥା (Pre-adolescence) ପ୍ରବେଶ କରେ । ବାଳକବାଳିକାମାନେ ଏହି ଅବସ୍ଥାରେ ବାସ୍ତବବାଦୀ (Realists) ହୁଅନ୍ତି । ସେମାନଙ୍କର ଶୈଶବର ଭାବପ୍ରବଣତା (Impulsiveness) ତିରୋହିତ ହୋଇଯାଏ; ପିତା ମାତାଙ୍କ ଉପରେ ସମ୍ପୂର୍ଣ୍ଣ ନିର୍ଭର କରିବାର ମନୋବୃତ୍ତି ଏକାବେଳକେ ଗୁଳିଯାଏ । ସେମାନେ ଗ୍ରାମର ଅନ୍ୟାନ୍ୟ ବାଳକବାଳିକାଙ୍କ ସଙ୍ଗରେ କ୍ରୀଡ଼ା କରି ସମୟ କଟାନ୍ତି । ସେମାନେ ଅସମ୍ଭବ ଅଦ୍ଭୁତ ଗପ ଶୁଣିବାକୁ ବା କଣ୍ଢେଇସଙ୍ଗରେ ଖେଳିବାକୁ ଆଉ ପସନ୍ଦ କରନ୍ତି ନାହିଁ । ଏହି ଅବସ୍ଥା ସାଧାରଣତଃ ସାତବର୍ଷ ବୟସରୁ ବାରବର୍ଷ ବୟସ ପର୍ଯ୍ୟନ୍ତ ସ୍ଥାୟୀ ହୁଏ । ଏହି ଅବସ୍ଥାରେ ବାଳକବାଳିକାମାନେ ବାସ୍ତବଜୀବନ ସମ୍ବନ୍ଧୀୟ କ୍ରୀଡ଼ାମାନଙ୍କରେ ରତ ହୁଅନ୍ତି । ସେମାନେ ଧୂଳିଘର ତୋଳି ଦୋକାନୀ, ରାନ୍ଧୁଣୀ, ବଢ଼ାଇ, କମାର ଓ କୁମ୍ଭାର ପ୍ରଭୃତିଙ୍କର ଅଭିନୟ କରନ୍ତି, ବଳିଷ୍ଠ ବାଳକ ଅନ୍ୟ ବାଳକଙ୍କର ନେତା ସାଜେ ଏବଂ ଅନ୍ୟ ସମସ୍ତେ ତାହାର କଥା ମାନି ଚଳନ୍ତି । ସେମାନେ ଆଖଡ଼ା କରି ରଜା ମନ୍ତ୍ରୀ ଇତ୍ୟାଦି ସାଜନ୍ତି । ସେମାନେ ନଈ ପହଁରନ୍ତି, ମାଛ ଧରନ୍ତି, ପକ୍ଷୀବସା ଖୋଜି ପକ୍ଷୀଡିମ୍ବ ଭାଙ୍ଗନ୍ତି; ଗଛ ଚଢ଼ନ୍ତି, ଅନ୍ୟ ବାଡ଼ିରେ ପଶି ଫଳ ଓ ତୋଳି ନେଇ ଖାନ୍ତି ।

ଏହି ସମୟରେ ଯୌନପ୍ରବୃତ୍ତିବ୍ୟତୀତ (Sexual instinct) ବାଳକବାଳିକାଙ୍କର ଅନ୍ୟାନ୍ୟ ସମସ୍ତ ପ୍ରବୃତ୍ତି ପରିସ୍ଫୁଟ ହୁଏ । ସେମାନେ ଦଳବଦ୍ଧ ହୋଇ ପରସ୍ପର ସହ ଯୁଦ୍ଧ କରନ୍ତି ନାନାପ୍ରକାର ଆଲମାଳିକା ଜିନିଷ ସଂଗ୍ରହ କରି ପକେଟ ଭର୍ତ୍ତି କରନ୍ତି । ପ୍ରଖର ସ୍ମୃତି, ଗଭୀର ବାସ୍ତବଜ୍ଞାନ ଓ ପ୍ରବଳ ଅନୁସନ୍ଧିତ୍ସା (Unbound curiocity) ପୌଗଣ୍ଡ ଅବସ୍ଥାର ପ୍ରଧାନ ଲକ୍ଷଣ । ଉପଯୁକ୍ତ ଶିକ୍ଷକର ତତ୍ତ୍ୱାବଧାନରେ ବାଳକବାଳିକାମାନଙ୍କର ଏହି ମାନସିକ ଶକ୍ତିକୁ କାର୍ଯ୍ୟରେ ଲଗାଇବା ଉଚିତ ।

ମାତ୍ର ଶୈଶବରେ ଶିଶୁମାନଙ୍କର ଜୀବନ ସ୍ୱାସ୍ଥ୍ୟସମ୍ପନ୍ନ ଓ ନିରାମୟ ନ ହେଲେ ପୌଗଣ୍ଡର ଆଚରଣମାନ ମଧ୍ୟ ସୁସ୍ଥ ହୁଏ ନାହିଁ । ବାଳକ ଶୈଶବର କୌଣସି ଆଚରଣରେ ଲକ୍ଷିଯାଇ ପାରେ । ସେ ଅଭିମାନ ଓ ଭାବପ୍ରବଣତାର ସ୍ତରକୁ ଅତିକ୍ରମ କରି ଉନ୍ନତ ସ୍ତରକୁ ଆସି ପାରେ ନାହିଁ । ତାହାର ବାସ୍ତବଜ୍ଞାନ ପରିସ୍ଫୁଟ ହୋଇ ପାରେନି । ସେ କଳ୍ପନାଜଳ୍ପନା ଓ ଦିବାସ୍ୱପ୍ନର ସ୍ତରରେ ଅଟକି ଯାଇ ପାରେ । ପକ୍ଷାନ୍ତରରେ ପୌଗଣ୍ଡାବସ୍ଥାର ସୁସ୍ଥ ବିକାଶରେ ବାଧା ପଡ଼ିଲେ ବାଳକର ମନୋବୃତ୍ତି ନିମ୍ନସ୍ତରକୁ ଖସିଯାଇ ଶୈଶବାବସ୍ଥାର କୌଣସି ଆଚରଣ ପ୍ରକାଶ କରି ପାରେ । କୌଣସି ବାଳକ ସଙ୍ଗୀମାନଙ୍କଠାରୁ ତାଡ଼ନା ଓ ଲାଞ୍ଛନା ପାଇଲେ ତାହାର ଦଳବଦ୍ଧ ହେବାର ମନୋବୃତ୍ତି ଅନ୍ତର୍ହିତ ହୋଇଯାଇ ପାରେ । ସେ ପୁନର୍ବାର ଶିଶୁସ୍ତରକୁ ଫେରିଆସି ପିତାମାତାଙ୍କ ଉପରେ ନିର୍ଭରଶୀଳ ହୁଏ ।

କୈଶୋରାବସ୍ଥା ସାଧାରଣତଃ ୧୨ ବର୍ଷ ବୟସରୁ ୧୮ ବର୍ଷ ବୟସ ଯାଏ ସ୍ଥାୟୀ ହୁଏ । ଶୈଶବାବସ୍ଥା ସଙ୍ଗରେ କୈଶୋରର ବହୁ ସାଦୃଶ୍ୟ ବିଦ୍ୟମାନ । ଶୈଶବର ଆଚରଣମାନ ଉନ୍ନତତର

ଭାବରେ କୈଶୋରାବସ୍ଥାରେ ପୁନରାବୃତ୍ତ ହୁଏ । ଏଣୁ କୈଶୋରକୁ ଦ୍ୱିତୀୟ ଶୈଶବ କୁହାଯାଏ । ଶୈଶବର ଭାବପ୍ରବଣତା ପର କୈଶୋରାବସ୍ଥାରେ (Adolescence) ବ୍ୟକ୍ତିବିଶେଷ ଭାବପ୍ରବଣ ହୁଏ ; ଶିଶୁ ପିତା ବା ମାତାଙ୍କ ଉପରେ ନିର୍ଭର କରେ ଏବଂ ପିତା ମାତାଙ୍କୁ ସ୍ନେହ କରେ । ମାତ୍ର କିଶୋର ବାଳକ ବନ୍ଧୁସ୍ନେହୀ ଏବଂ ବନ୍ଧୁମାନଙ୍କ ମତାମତକୁ ବିଶେଷ ଖାତିର କରେ ଓ ଡରେ । ବାଲ୍ୟ-କାଳରେ ଦଳଗତ ଜୀବନ (Tribal life) ଦେଖାଯାଏ; ଏହି ଅବସ୍ଥାରେ ବାଳକ ବାଳିକାମାନେ ଦଳ ବା ଆଖଡ଼ା ବାନ୍ଧି ଚଳନ୍ତି, ମାତ୍ର ଦଳର ଜଣେ ନେତା ଥିଲେ ମଧ୍ୟ ପ୍ରତ୍ୟେକ ନିଜକୁ ସ୍ୱାଧୀନ ବୋଲି ମନେ କରନ୍ତି । କିନ୍ତୁ କୈଶୋରାବସ୍ଥାର ପ୍ରଥମ କେତେକ ବର୍ଷ କିଶୋର ବାଳକର ଜୀବନରେ ସାମନ୍ତ ଅବସ୍ଥା (feudal stage) ଦେଖାଯାଏ । ଏହି ବୟସରେ ବାଳକ ତାହାର କୌଣସି ବୟସ୍କ ସଙ୍ଗୀ, ମହାପୁରୁଷ ବା ବଡ଼ଲୋକକୁ ନିଜର ଆଦର୍ଶ ମନେ କରି ତାହାକୁ ଅନ୍ଧଭାବରେ ଅନୁକରଣ କରେ । ଦୁଇ ତିନି ବର୍ଷ ପରେ ଏହି ଅବସ୍ଥା ଚାଲିଯାଇ ୧୭।୧୮ ବର୍ଷ ବୟସ ବେଳକୁ ସ୍ୱାୟତ୍ତଶାସନମୂଳକ ଅବସ୍ଥା (Democratic stage) ବାଳକର ଜୀବନରେ ଦେଖାଯାଏ । ଏହି ସମୟରେ ବାଳକ ଆଉ କାହାରିକି ଅନ୍ଧଭାବରେ ଆଦର୍ଶରୂପେ ଗ୍ରହଣ କରେ ନାହିଁ ଓ ସନ୍ଦେହବାଦୀ ହୁଏ ।

ବାଲ୍ୟାବସ୍ଥାରେ ବାଳକ ବାଳିକାମାନେ ନିଃସଙ୍କୋଚରେ ପରସ୍ପର ସଙ୍ଗେ ମିଶା ମିଶି କରି କ୍ରୀଡ଼ା କରନ୍ତି । ଏହି ଆଚରଣଟି କୈଶୋରରେ ଏକାବେଳକେ ଚାଲିଯାଏ । ଏହି ଅବସ୍ଥାରେ ବାଳକ ବାଳିକାମାନଙ୍କଠାରେ ଆତ୍ମଲିଙ୍ଗୀ ଓ ସମଲିଙ୍ଗୀ ମନୋବୃତ୍ତି (Auto Sexual and Homo Sexual tendencies)

ଦେଖାଯାଏ । ବାଳକ ବାଳକ ମଧ୍ୟରେ ଅନାବିଳ ଓ ନିଷ୍କପଟ ବନ୍ଧୁତା ଏହି ସମୟରେ ଦେଖାଯାଏ । ଏହି ବୟସରେ ସଙ୍ଗାତ, ମିତ, ବଉଳ ପ୍ରଭୃତି ସମ୍ବନ୍ଧ ସ୍ଥାପନ କରିବା ବାଳକମାନଙ୍କଠାରେ ଲକ୍ଷିତ ହୁଏ । ପୁରୁଷର ସ୍ତ୍ରୀ ପ୍ରତି ବା ସ୍ତ୍ରୀର ପୁରୁଷ ପ୍ରତି ଆକୃଷ୍ଟ ହେବାର ମନୋବୃତ୍ତି ପ୍ରାୟ ୧୫।୧୬ ବର୍ଷ ବୟସ ପର୍ଯ୍ୟନ୍ତ ବାଳକ ବାଳିକାଙ୍କଠାରେ ଜାଗ୍ରତ ହୁଏ ନାହିଁ । ଗୋଟିଏ ଚତୁର୍ଦ୍ଦଶବର୍ଷୀୟା ନବପରିଣୀତା ବାଳିକା ସ୍ୱାମୀଘରକୁ ଗଲେ ମଧ୍ୟ ତାହାର ଅନ୍ୟ ବାଳିକା ସଙ୍ଗାତ ମିତ ବା ମାଡାର କଥା ବେଶୀ ଭାବେ ।

ଶିଶୁ ପରି କିଶୋର ବନ୍ଧା ଅଶ୍ରାରେ ବର୍ତ୍ତି ପାରେ ନାହିଁ ବୋଲି ପୂର୍ବରୁ କୁହାଯାଇଛି; ଶିଶୁର ଆଶ୍ରୟ ଯେପରି ତାହାର ପିତା ମାତା, କିଶୋରର ଆଶ୍ରୟ ହେଉଛି ତାହାର ସମବୟସ୍କ କୌଣସି ବନ୍ଧୁ । କିଶୋର କଳ୍ପନାଜଳ୍ପନାକାରୀ, ଶିଶୁପରି ଦିବାସ୍ୱପ୍ନ ଦେଖେ ଓ ଅସମ୍ଭବ କଳ୍ପନା କରେ ; ମାତ୍ର ଶିଶୁର କଳ୍ପନା ଅହେତୁକ (Irrational) ଏବଂ କିଶୋରର କଳ୍ପନା ପଛରେ ହେତୁ ନିହିତ ଥାଏ । ଘୋର ମାନସିକ ଅବସାଦ ଓ ମର୍ମବ୍ୟଥା ବେଳେ ବେଳେ କିଶୋରମନକୁ ଉଦ୍‌ବେଳିତ କରେ; ବେଳେ ବେଳେ ସେ ଖୁବ୍ ପ୍ରସନ୍ନ ଦେଖାଯାଏ । ଘଣ୍ଟାର ପେଣ୍ଡୁଲମ ପରି ପ୍ରସାଦ ଓ ବିଷାଦ ଏହି ଦୁଇଟି ମିଜାଜର ପରିବର୍ତ୍ତନ ଓ ପୁନରାବର୍ତ୍ତନ ସାରା ଜୀବନ ଚାଲିଥାଏ । ମାତ୍ର କୈଶୋରରେ ଏହି ଦୁଇ ଅବସ୍ଥାର ଅଦଳ ବଦଳ ଖୁବ ଜୋରସୋରରେ ଚାଲେ ।

୧୮ ବର୍ଷ ବୟସରୁ ୪୦ ବର୍ଷ ବୟସ ଯାଏ ଅବସ୍ଥାକୁ ଯୌବନ କୁହାଯାଏ । ଅଠରରୁ ପଚିଶ ବର୍ଷ ବୟସ ପର୍ଯ୍ୟନ୍ତ କାଳକୁ ଦୃଢ଼ୀଭୂତ ଯୌବନର ( Consolidated Youth )

ସମୟ କୁହାଯାଏ । ଏହି ସମୟ ମଧ୍ୟରେ ଦୈହିକ ଓ ମାନସିକ ବୃଦ୍ଧିର ପୂର୍ଣ୍ଣତା ପ୍ରାପ୍ତ ହୁଏ । ମାଂସପେଶୀ ସୁଦୃଢ଼ ଏବଂ ଶକ୍ତ ହୁଏ; ଦେହର ପୂର୍ଣ୍ଣ ଉଚ୍ଚତା ଲାଭ ହୁଏ । ୨୫ ବର୍ଷ ବୟସ ପରେ କାହାର ମାଂସବୃଦ୍ଧି ହୁଏ ନାହିଁ କିମ୍ବା ଦେହର ଉଚ୍ଚତା ବୃଦ୍ଧି ହୁଏ ନାହିଁ । ୨୫ ବର୍ଷ ବୟସରୁ ୪୦ ବର୍ଷ ବୟସ ପର୍ଯ୍ୟନ୍ତ ଅବସ୍ଥାକୁ ସ୍ଥିରାବସ୍ଥା (Stand Still Stage) କୁହାଯାଏ । ଏହି ସମୟ ମଧ୍ୟରେ ଦୈହିକ ଓ ମାନସିକ ଶକ୍ତିର ବୃଦ୍ଧି ବା କ୍ଷୟ ହୁଏ ନାହିଁ ।

ବାସ୍ତବତା ( Realism ), ସ୍ୱପ୍ନ ( dream ), ଉନ୍ମାଦନା ( Sensation ) ଏବଂ କ୍ରୀଡ଼ାମନୋବୃତ୍ତି ( Humour ) ଏହି ଚାରୋଟି ମାନସିକ ଉପାଦାନ ଜୀବନପକ୍ଷରେ ଅତ୍ୟାବଶ୍ୟକ । କେବଳ ଏହି ମାନସିକ ଶକ୍ତିଚୟର ବିଦ୍ୟମାନତା ଯେ ଯଥେଷ୍ଟ ତାହା ନୁହେଁ, ଏହି ଶକ୍ତିଚତୁଷ୍ଟୟ ମଧ୍ୟରେ ଯଥାନୁପାତିକ ସାମ୍ୟ ରହିବା ବିଧେୟ । କୈଶୋରରେ ଏହି ସାମ୍ୟ ରହି ପାରେ ନାହିଁ, ମାତ୍ର ଯୌବନରେ ଏହି ସାମ୍ୟ ରହେ; ଏଣୁ ଯୌବନରେହିଁ ମାନବ ତାହାର ସମସ୍ତ ମାନସିକ ଓ ଶାରୀରିକ ଶକ୍ତିମାନଙ୍କର ସଦ୍‌ବ୍ୟବହାର କରି ପାରେ । ଶୈଶବରେ ଉନ୍ମାଦନା ଓ କ୍ରୀଡ଼ାମନୋବୃତ୍ତି ଖୁବ୍ ଅଧିକ ମାତ୍ରାରେ ଦେଖାଯାଏ; ମାତ୍ର ବାଲ୍ୟକାଳରେ କେବଳ ବାସ୍ତବତାରହିଁ ଆଧିକ୍ୟ ଦେଖାଯାଏ; ୭ । ୮ ବର୍ଷ ବୟସର ବାଳକ ବାଳିକାଙ୍କୁ ସ୍ୱପ୍ନ ବା କଳ୍ପନା ଭଲ ଲାଗେ ନାହିଁ । କୈଶୋରାବସ୍ଥା ବଡ଼ ଗୋଳମାଳିଆ ଓ ବିପ୍ଳବମୟ । କେତେବେଳେ ସ୍ୱପ୍ନର ଆଧିକ୍ୟ ଖୁବ୍ ବେଶୀ ହୁଏ, କେତେବେଳେ ଉନ୍ମାଦନା ମନୋବୃତ୍ତି ଅନ୍ୟ ସମସ୍ତ ମାନସିକ ଉପାଦାନକୁ ଘୋଡ଼ାଇ ପକାଏ । ମାତ୍ର ଯୌବନକାଳ ସୁସ୍ଥ ଓ ସ୍ୱାଭାବିକ ହେଲେ ଯୁବକ ବାସ୍ତବବାଦୀ ହୁଏ, ଅଥଚ ଉଚ୍ଚ କଳ୍ପନା ଓ ଚିନ୍ତା କରିବାକୁ ଅବସର ସୃଷ୍ଟି କରି ପାରେ ।

ଜୀବନକୁ ପୂର୍ଣ୍ଣ ଉପଭୋଗ ଓ ଅନୁଭବ କରିବା ପାଇଁ ତାହାଠାରେ ଯଥେଷ୍ଟ ଉନ୍ମାଦନା ଥିଲେ ମଧ୍ୟ ଜୀବନକୁ ସରସ ଓ ସୁନ୍ଦର କରିବା ପାଇଁ ତାହାଠାରେ କ୍ରୀଡ଼ାମନୋବୃତ୍ତିର ଅଭାବ ନ ଥାଏ । ସୁସ୍ଥ ଯୌବନରେ ଯେଉଁ ରମଣାତ୍ମକ ପ୍ରବୃତ୍ତି ଦେଖାଯାଏ, ତାହା ହେଉଛି ବିଷମଲିଙ୍ଗୀ ( Love for the opposite sex ) । ଏହି ବୟସରେ ସର୍ବପ୍ରକାର ଆତ୍ମଲିଙ୍ଗୀ ସମଲିଙ୍ଗୀ ଓ ଅନ୍ୟାନ୍ୟ ଅସ୍ୱାଭାବିକ ଯୌନ ମନୋବୃତ୍ତି ଦୂର ହୋଇଯାଏ ।

ପଶ୍ଚାତ୍ରେ କୌଣସି ପ୍ରବଳ ଦୁର୍ଦ୍ଦମନୀୟ କାମନାର ବନ୍ଦ୍ୟ-ମାନତାରୁ ଯୌବନ ଅସୁସ୍ଥ ଓ ଅସ୍ୱାଭାବିକ ହୋଇପଡ଼ିଲେ ବ୍ୟକ୍ତି ନିମ୍ନସ୍ତରର କୌଣସି ଆଚରଣରେ ଲିଖିଯାଏ ବା ନିମ୍ନସ୍ତରକୁ ଖସିଯାଇ ପାରେ । ଯୁବକ କଠୋର ବାସ୍ତବବାଦୀ ହୋଇ ପାରେ, ମାତ୍ର ତାହାଠାରେ ଉଚ୍ଚ କଳ୍ପନା ଓ ଚିନ୍ତାର ସମ୍ପୂର୍ଣ୍ଣ ଅଭାବ ଦେଖା-ଯାଏ, କିମ୍ବା ତାହାଠାରେ ବାସ୍ତବଜ୍ଞାନର ସମ୍ପୂର୍ଣ୍ଣ ଅଭାବ ଦେଖାଯାଏ ଏବଂ ସେ କୈଶୋରାବସ୍ଥାର ଦିବାସ୍ୱପ୍ନ ଓ ଅଦ୍ଭୁତ କଳ୍ପନାର ସ୍ତରରେ ଲିଖିଯାଇ ପାରେ । ପ୍ରବଳ କାମନାର ବନ୍ଦ୍ୟ-ମାନତା ହେତୁ ସେ କୈଶୋରାବସ୍ଥାର ଆତ୍ମଲିଙ୍ଗୀ ଓ ସମଲିଙ୍ଗୀ ମନୋବୃତ୍ତିର ସ୍ତରରେ ଲିଖିଯାଇ ପାରେ ।

ପ୍ରୌଢ଼ାବସ୍ଥା ସାଧାରଣତଃ ୪୦ ବର୍ଷ ବୟସରୁ ୫୫ ବା ୬୦ ବର୍ଷ ବୟସ ପର୍ଯ୍ୟନ୍ତ ସ୍ଥାୟୀ ହୁଏ । ଏହି ସମୟରୁ ଦୈହିକ ଓ ମାନସିକ ଶକ୍ତିମାନଙ୍କ ମଧ୍ୟରୁ କାହାର କାହାର ଶିଥିଳତା ଆରମ୍ଭ ହୁଏ । ଏହି ସମୟରେ ଦୃଷ୍ଟିଶକ୍ତି ଓ ସ୍ମୃତିଶକ୍ତିର ହ୍ରାସ ହେବାର ଦେଖାଯାଏ । ଜରାର ଆଗମନ ପୂର୍ବରୁ ପ୍ରକୃତି ଯେପରି କି ମଣିଷକୁ ଆଗରୁ ସାବଧାନ କରାଇ ଦିଏ, ମାତ୍ର ମଣିଷର ମନୋବୃତ୍ତି ଏପରି ଯେ, ସେ ପ୍ରକୃତିର ଏହି ଦୟାମୂଳକ ଓ ସାହାଯ୍ୟକାରକ ନିର୍ଦ୍ଦେଶକୁ

ଅବହେଳା କରେ । ଜରା ଯେ ଛପି ଛପି ତାହାର ମନ ଓ ଶରୀରରେ ପ୍ରବେଶ କରିବାକୁ ଆସୁଛନ୍ତି, ଏହା ସେ ମାନିବାକୁନାରାଜ ହୁଏ । ପୌଢ଼ାବସ୍ଥା ସୁସ୍ଥ ଓ ସ୍ୱାଭାବିକ ହେଲେ ୬୦ ବର୍ଷ ବୟସରୁ ଜୀବନର ପରବର୍ତ୍ତୀ ଅବସ୍ଥା ବାର୍ଦ୍ଧକ୍ୟର ଆବିର୍ଭାବ ହୁଏ । ବାର୍ଦ୍ଧକ୍ୟରେ ଯୌବନର ପୂର୍ବ ଶକ୍ତି ଓ ତେଜ ହ୍ରାସପ୍ରାପ୍ତ ହେଲେ ମଧ୍ୟ ସୁସ୍ଥ ଓ ସ୍ୱାଭାବିକ ବାର୍ଦ୍ଧକ୍ୟରେ ବ୍ୟକ୍ତି ଯନ୍ତ୍ରଣା ପାଇବା ଦୂରେ ଥାଉ, ବରଂ ଯୌବନର ଅସ୍ଥାୟୀ ଓ ଚଞ୍ଚଳ ଆନନ୍ଦ ପରିବର୍ତ୍ତେ ଏକପ୍ରକାର ସ୍ଥାୟୀ ଓ ଅତୁଟ ଆନନ୍ଦର ଅଧିକାରୀ ହୁଏ । ପୂର୍ବପରି ପ୍ରସାଦ-ବିଷାଦର ଢୁଆଁରଭଣ୍ଡାରେ ସୁସ୍ଥ ବୃଦ୍ଧ ବ୍ୟକ୍ତିର ମନ ଆଉ ହାବୁଡ଼ୁବୁ ଖାଏ ନାହିଁ । ମାତ୍ର କୌଣସି ପ୍ରବଳ ଓ ଦୁର୍ଦ୍ଦମନୀୟ କାମନାର ବିଦ୍ୟମାନତା, ଅବରୋଧ ବା ଅତୃପ୍ତି ଘଟିଲେ ବାର୍ଦ୍ଧକ୍ୟ ଘୋର ଯନ୍ତ୍ରଣାପ୍ରଦ ଓ ବିକୃତ ହୋଇ ପଡ଼େ । ଅନେକ ବୃଦ୍ଧ ବ୍ୟକ୍ତିଙ୍କଠାରେ ଯେ ନିମ୍ନସ୍ତରର ପିଲାଳିଆ ଭାବ ( Childishness ) ଦେଖାଯାଏ, ଅନେକ ବୃଦ୍ଧ ବ୍ୟକ୍ତି ଯେ ଶୈଶବର ନିମ୍ନସ୍ତରକୁ ଖସି ଯାଇ ଶିଶୁପରି ଭାବପ୍ରବଣ ( Impulsive ) ଅଭିମାନୀ ଓ ଜିଦିଖୋର ହୋଇପଡ଼ନ୍ତି, ତାହାର କାରଣ କୌଣସି ଦୁର୍ଦ୍ଦମନୀୟ ଅତୃପ୍ତ କାମନା । ସେମାନେ ଯୌବନ ବା କୈଶୋରର ସ୍ତରକୁ ଖସିଯାନ୍ତି ନାହିଁ, ପରନ୍ତୁ ସେମାନେ ଜୀବନର ସର୍ବନିମ୍ନ ସ୍ତର ଶୈଶବକୁ ଖସିଯାନ୍ତି । ଏହାର କାରଣ ଯୌବନ ଓ କୈଶୋରର ସମସ୍ତ ଆଚରଣ ରମଣାତ୍ମକ ( Sexcentred ) ଏବଂ ବୃଦ୍ଧବ୍ୟକ୍ତି ଏବଂବିଧ ଆଚରଣ ପ୍ରକାଶରେ ସମ୍ପୂର୍ଣ୍ଣ ଅପାରଗ ( Impotent ) । ତଥାପି କେହି କେହି ବୃଦ୍ଧ ବ୍ୟକ୍ତି ଯୌବନସୁଲଭ ହାବଭାବ ପ୍ରକାଶ କରିବାର ବ୍ୟର୍ଥ ଚେଷ୍ଟାର ଦୃଷ୍ଟାନ୍ତ ବିରଳ ନୁହେଁ ।

ନିମ୍ନସ୍ତରର କୌଣସି ଆଚରଣରେ ବନ୍ଧନ ଓ ନିମ୍ନସ୍ତରର କୌଣସି ଆଚରଣକୁ ଗତି କରିବା ଯୋଗୁଁ ଏ ପ୍ରବଳ ମାନସିକ ବିକୃତି

ଏବ ଏ ଯୋଡ଼କ ଅପବ୍ୟୟର ଅନେକ ମାନସିକ ବକୃତର କାରଣ ହୁଏ । ଏହୁ ଯୋଡ଼କ ସାଧାରଣତଃ ବାଲ୍ୟ, କୈଶୋର, ଯୌବନ ଓ ବାର୍ଦ୍ଧକ୍ୟାଦ ବୟସର ସନ୍ଧିସ୍ଥଳରେ ( Climacteric Period ) ଘଟେ ।

---

## ତ୍ରୟୋଦଶ ପରିଚ୍ଛେଦ

### ଦିବାସ୍ୱପ୍ନ ( Day dream )

ମଣିଷ ରାତିରେ ଶୋଇଥିବାବେଳେ ସାଧାରଣତଃ ସ୍ୱପ୍ନ ଦେଖେ ଏବଂ ଏହି ସ୍ୱପ୍ନକୁ ଉଣାଅଧିକରେ ସ୍ୱାଭାବିକ ବୋଲିଯାଇ ପାରେ । ମାତ୍ର ଜାଗ୍ରତ ଅବସ୍ଥାରେ ମଧ୍ୟ କେହି କେହି ସ୍ୱପ୍ନ ଦେଖନ୍ତି ଓ ନାନାପ୍ରକାର ଅସାର ଓ ଅସମ୍ଭବ କଳ୍ପନା କରନ୍ତି ଏବଂ ଅଳୀକ ଆକାଶସୌଧ ରଚନା କରନ୍ତି । ଶୈଶବ ଓ କୈଶୋରାବସ୍ଥାରେ ଏହି ଜାଗ୍ରତ୍ ଦିବାସ୍ୱପ୍ନର ମନୋବୃତ୍ତି ପ୍ରତ୍ୟେକ ଶିଶୁ ଓ କିଶୋର-ଠାରେ ଦେଖାଯାଏ । ଏଣୁ ଶିଶୁ ଓ କିଶୋରର ଦିବାସ୍ୱପ୍ନ ମଧ୍ୟ ଉଣା ଅଧିକରେ ସ୍ୱାଭାବିକ ।

ମାତ୍ର ଏହି ଜାଗ୍ରତ୍ ଦିବାସ୍ୱପ୍ନର ମାତ୍ରା ଅତ୍ୟଧିକ ଦେଖାଗଲେ କିମ୍ବା ଶୈଶବ ଓ କୈଶୋର ବ୍ୟତୀତ ଅନ୍ୟ ଅବସ୍ଥାରେ ବାସ୍ତବ ଧାରଣାଠାରୁ ( Sense of realism ) ସ୍ୱପ୍ନର ମାତ୍ରା ଅଧିକତର ହେଲେ, ତାହା ମାନସିକ ବିକୃତିରେ ପରିଣତ ହୁଏ । ଦିବାସ୍ୱପ୍ନଗ୍ରସ୍ତ ବ୍ୟକ୍ତି ସମ୍ପୂର୍ଣ୍ଣ ସଂସାର ଅନଭିଜ୍ଞ; ସେ ବଡ଼ ବଡ଼ କଳ୍ପନା କରିପାରେ, ମାତ୍ର ବାସ୍ତବଜ୍ଞାନର ଅଭାବରୁ ତାହାର କୌଣସି କଳ୍ପନା କାର୍ଯ୍ୟକାରୀ ହୋଇ ପାରେ ନାହିଁ । ସେ ଅଗାଧ ପାଣ୍ଡିତ୍ୟର ଅଧିକାରୀ ହୋଇ ପାରେ, ମାତ୍ର ସଂସାରକ୍ଷେତ୍ରରେ ସେ ସମ୍ପୂର୍ଣ୍ଣ ମୂର୍ଖତା ଓ ନିର୍ବୋଧତା ପ୍ରକାଶ କରେ । ଏହିପ୍ରକାର ବ୍ୟକ୍ତିକୁ ମୂର୍ଖ-ପଣ୍ଡିତ ( Wise fool ) କୁହାଯାଏ । ମୂର୍ଖ-ପଣ୍ଡିତ ବହୁଶାସ୍ତ୍ରପ୍ରବୀଣ, ସାହିତ୍ୟରସିକ ଓ ଦାର୍ଶନିକ, ମାତ୍ର ସେ କାର୍ଯ୍ୟକୁଶଳ ନୁହେଁ । ମୂର୍ଖ-ପଣ୍ଡିତ ସରସ ଭାବ କଳ୍ପନା କରି ଖଣ୍ଡିଏ ପ୍ରକାଣ୍ଡ ନାଟକ ବା ଉପନ୍ୟାସ ବା ଅନ୍ୟ

କୌଣସି ପୁସ୍ତକ ଲେଖିବାକୁ ଅଗ୍ରସର ହୁଏ; ଗୁରୁ ଛଅ ପତ୍ର ମାତ୍ର ଲେଖି ସେ ଆଉ ଅଗ୍ରସର ହୋଇ ପାରେ ନାହିଁ। ତାହାର କଳ୍ପନା ପୁସ୍ତକଲେଖାପ୍ରୟାସ ଛାଡ଼ି ଅପର କୌଣସି ବିଷୟରେ ଲିପ୍ତ ହୁଏ। ଉକ୍ତ କଳ୍ପନାର ବଶବର୍ତ୍ତୀ ହୋଇ ସେ କଥିତ୍ ଦିବସ ସଙ୍ଗୀତଚର୍ଚ୍ଚା, ଚିତ୍ରାଙ୍କନ ବା ଅଭିନୟାଦିରେ ମନୋନିବେଶ କରେ। ମାତ୍ର ଅବାସ୍ତବ ଦିବାସ୍ୱପ୍ନ ହେତୁ ସେ ଅତି ଅଳ୍ପ ସମୟ ମଧ୍ୟରେ ଏହି ଚର୍ଚ୍ଚା-ମାନଙ୍କୁ ଅର୍ଦ୍ଧସମାପ୍ତ ଅବସ୍ଥାରେ ଛାଡ଼ି ଆସେ। ଦିବାସ୍ୱପ୍ନଗ୍ରସ୍ତ ବ୍ୟକ୍ତି ବୈଷୟିକ ଉନ୍ନତି କରିବାକୁ ପ୍ରୟାସୀ ହୋଇ, ଦଲାଲଗିରି, କୃଷି ଓ ବ୍ୟବସାୟ ପ୍ରଭୃତି ସବୁଥିରେ ହାତ ଦିଏ; ବ୍ୟବସାୟ କରିବାକୁ ମନ ବଳାଇ ଅତି ଅଳ୍ପ ମୂଳଧନରେ ଅଳ୍ପକାଳ ମଧ୍ୟରେ କୋଟିପତି ହୋଇଯିବାର ସ୍ୱପ୍ନ ଦେଖେ; ମାତ୍ର କୌଣସି ଗୋଟିଏ କାର୍ଯ୍ୟରେ ଅଧିକ ଦିନ ସେ ତିଷ୍ଠି ପାରେ ନାହିଁ। ଏଣୁ କି ବୈଷୟିକ ଉନ୍ନତି, କି ମାନସିକ ଉନ୍ନତି, କୌଣସି ପ୍ରକାର ଉନ୍ନତି ଦିବାସ୍ୱପ୍ନଗ୍ରସ୍ତର ଭାଗ୍ୟରେ ଘଟେ ନାହିଁ। ସବୁ ବିଷୟରେ ତାହାର ଅବନତି ଘଟେ; ମାତ୍ର ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ଆଶା ବାନ୍ଧି ରହିଥାଏ। ତାହାର ଜୀବନରେ ନୈରାଶ୍ୟ ଦେଖାଯାଏ ନାହିଁ। ଆଶାହିଁ ଦିବା-ସ୍ୱପ୍ନଗ୍ରସ୍ତର ଏକମାତ୍ର ସମ୍ବଳ, ନିଷ୍ଫଳ ଓ ଅସମ୍ଭବ ଆଶା ଛଡ଼ା ତାହାର ଆଉ କିଛି ନ ଥାଏ ଏବଂ ଏହି ଆଶାହିଁ ତାହାକୁ ବଞ୍ଚାଇ ରଖେ।

ପକ୍ଷାନ୍ତରେ ସ୍ୱପ୍ନ ଓ କଳ୍ପନା ବ୍ୟତୀତ କେବଳ ମାତ୍ର ନୀରସ ବାସ୍ତବଜ୍ଞାନ ଓ ବିଷୟକୁଶଳତା ମାନସିକ ବିକୃତିର ପରିଚାୟକ ହୁଏ। ବାସ୍ତବଜ୍ଞାନସମ୍ପନ୍ନ ବିଷୟକୁଶଳ ବ୍ୟକ୍ତିର କାର୍ଯ୍ୟକାରୀ ଶକ୍ତି ଖୁବ୍ ପ୍ରବଳ; ମାତ୍ର ତାହାର କୌଣସି ପରିସମାପ୍ତ କାର୍ଯ୍ୟରେ ସୁଚିନ୍ତିତ ଯୋଜନା ଓ କଳ୍ପନା ନ ଥିବାରୁ ଏହି କାର୍ଯ୍ୟର ଫଳ ଓ ଲକ୍ଷ୍ୟ ନଷ୍ଟ ହୋଇଯାଏ; ଏଣୁ କଳ୍ପନାହୀନ ବିଷୟକୁଶଳ ବ୍ୟକ୍ତି ସାଧାରଣତଃ

ନୈରାଶ୍ୟଗ୍ରସ୍ତ ହୁଏ । ବିଷୟକୁଶଳ ବ୍ୟକ୍ତିର ଖୁବ୍ ବୈଷୟିକ ଉନ୍ନତି ହୋଇ ପାରେ, ସେ ଖୁବ୍ ଧନ ଅର୍ଜି ପାରେ; ମାତ୍ର ଏହି ଧନ ବା ବୈଷୟିକ ଉନ୍ନତିର ପୂର୍ଣ୍ଣ ସଦ୍‌ବ୍ୟବହାର ସେ କରି ପାରେ ନାହିଁ । ସୁଚିନ୍ତିତ ଯୋଜନା ଓ କଳ୍ପନାର ଅଭାବରୁ ଅତର୍କିତଭାବରେ ତାହାକୁ ଶତ୍ରୁମାନେ ଆକ୍ରମଣ କରନ୍ତି ଏବଂ ଅତର୍କିତଭାବରେ ସେ ନାନା ବାଧାବିଘ୍ନରେ ପଡ଼େ ।

ସ୍ୱପ୍ନ ଏବଂ ବାସ୍ତବଜ୍ଞାନ ନ ଥାଇ କେବଳ ଯଦି ଅତ୍ୟଧିକ କ୍ରୀଡ଼ା-ମନୋବୃତ୍ତି ( Sense of Humour ) କୌଣସି ଲୋକର ରହେ, ତେବେ ଉକ୍ତ ଅତ୍ୟଧିକ କ୍ରୀଡ଼ାମନୋବୃତ୍ତି ମଧ୍ୟ ମାନସିକ ବିକୃତିର ପରିଚାୟକ ହୁଏ । ଉକ୍ତ ବ୍ୟକ୍ତିର ଜୀବନଟା ବେପରବାୟ ହୁଏ; ତାହାର କୌଣସି ପ୍ରକାର ଚିନ୍ତା ଦିକ ନ ଥାଏ; ଅଥଚ ସ୍ୱପ୍ନ ଏବଂ କାର୍ଯ୍ୟକୁଶଳତା ଅଭାବରୁ ସେ କୌଣସି କାର୍ଯ୍ୟ କରି ପାରେ ନାହିଁ । ଏହିପରି ବ୍ୟକ୍ତିକୁ "ଗଣ୍ଡିପୁଅ ଅନନ୍ତା" କୁହାଯାଏ । ଗଣ୍ଡିପୁଅ ଅନନ୍ତା ନିଜେ ଭାତ ଖାଇ ପାରେ ନାହିଁ, ତାକୁ ଅନ୍ୟ ଜଣେ ଖୋଇ ଦିଏ; ସେ ଭାତ ଖାଇ ହାତ ଧୋଇ ଜାଣେ ନାହିଁ; ସେ ନିଜର ଲୁଗା ପିନ୍ଧି ଜାଣେ ନାହିଁ । ତାହାର ନ ଥାଏ ଗାମ୍ଭୀର୍ଯ୍ୟ, ନା ଥାଏ କାର୍ଯ୍ୟରେ ଆସ୍ଥା । ସେ କୌଣସି କାର୍ଯ୍ୟକୁ ଗାମ୍ଭୀର୍ଯ୍ୟଯୁକ୍ତ ମନେ କରେ ନାହିଁ । ଅଧିକାଂଶ ସମୟ ତାହାର ତାସ ପଶାରେ ବା ବନ୍ଧୁ-ମେଳରେ ହସଖୁସିରେ କଟିଯାଏ । ଏହିପରି ବ୍ୟକ୍ତି ମୁଣ୍ଡଖାଲ ତୁଣ୍ଡରେ ମାରି ଶ୍ରମ କରି ଜାଣେ ନାହିଁ ଅଥଚ ନିଜର ଜୀବନଧାରଣ ପାଇଁ ଭିକ୍ଷା କରି ବି ଜାଣେ ନାହିଁ ।

ବିକୃତ କ୍ରୀଡ଼ାମନୋବୃତ୍ତିଗ୍ରସ୍ତ ବ୍ୟକ୍ତି ସାମାନ୍ୟ ଶ୍ରମରେ ନିଜକୁ ପରିଶ୍ରାନ୍ତ ମନେ କରେ; ଦୁଇବାଜି ତାସ ନ ଖେଳିଲେ ତାହାର

ଶାନ୍ତିର ବିଘ୍ନ ହୁଏ ନାହିଁ । ଏଣୁ ଜୀବନର ସମ୍ୟକ୍ ଓ ସରସ ଉପଲବ୍ଧି ପାଇଁ ଉପଯୁକ୍ତ ପରିମାଣରେ ସୁନିୟନ୍ତ୍ରିତ ସଂଯତ କଳ୍ପନା, ବିଷୟକୁଶଳତା ଏବଂ କ୍ରୀଡ଼ାମନୋବୃତ୍ତିର ବିଦ୍ୟମାନତା ଏକାନ୍ତ ଆବଶ୍ୟକ । ଏମାନଙ୍କ ମଧ୍ୟରୁ କେବଳ ଗୋଟିକର ଆଧିକ୍ୟ ବା ଅଭାବ ଘଟିଲେ ଜୀବନ ବିକୃତ ହୋଇ ଉଠେ ।

ଉପଯୁକ୍ତ ପରିମାଣରେ କଳ୍ପନା, ବିଷୟକୁଶଳତା ଓ କ୍ରୀଡ଼ାମନୋବୃତ୍ତି କେବଳ ବି ଯଥେଷ୍ଟ ନୁହେଁ । ଆଉ ଗୋଟିଏ ମାନସିକ ଶକ୍ତି ଲୋଡ଼ା, ତାହା ହେଉଛି ନ୍ୟାଯ୍ୟାନ୍ୟାଯ୍ୟ ଅନୁଭବ କରି ପାରିବାର ଉନ୍ମାଦନାଶକ୍ତି (Sensation) । ପକ୍ଷାନ୍ତରେ ଏହି ଶକ୍ତିର ଅଭାବ ଘଟିଲେ ଜୀବନ ଯେପରି ବିକୃତ ହୁଏ, ଏହି ଶକ୍ତିର ଆଧିକ୍ୟ ମଧ୍ୟ ମାନସିକ ବିକୃତିର ପରିପୁଷ୍ଟିକ । କାରଣ ଏହି ଉନ୍ମାଦନାର ଆଧିକ୍ୟ ହେତୁ କଳ୍ପନା, କାର୍ଯ୍ୟକୁଶଳତା ଓ କ୍ରୀଡ଼ାମନୋବୃତ୍ତି ହ୍ରାସ ପ୍ରାପ୍ତ ହୁଏ । ଅତ୍ୟଧିକ ଉନ୍ମାଦନାବିକୃତିଗ୍ରସ୍ତ ବ୍ୟକ୍ତିର କ୍ରୋଧ ଉତ୍ପାଦ ଅନୁଭୂତି-ମାନ ଅତ୍ୟନ୍ତ ତୀବ୍ର ହୋଇପଡ଼େ ଏବଂ ତାହାର ଜୀବନକୁ ବିଷମୟ କରିଦିଏ । ଅତ୍ୟଧିକ ଉନ୍ମାଦନାଶୀଳ ବ୍ୟକ୍ତି ଖୁବ୍ ଅଭିମାନୀ, କ୍ରୋଧିଖୋର, ହିଂସ୍ରକ, ଈର୍ଷାତୁର ଅଥଚ ସେ ବିକୃତ-ଦୟାର୍ଦ୍ର ଓ ପରଦୁଃଖକାତର । ତାହାଠାରେ ଦୁଇ ପରସ୍ପର ବିପରୀତ ଗୁଣର ଆଧିକ୍ୟ ଦେଖାଯାଏ ( Mixture of opposites ) ।

---

# ଚତୁର୍ଦ୍ଦଶ ପରିଚ୍ଛେଦ

## ଅତୃପ୍ତ କାମନାର ନୈଶଲୀଳା

## (Nightly drama of the unfulfilled desires)

ମଣିଷ ସ୍ୱପ୍ନ ଦେଖେ କାହିଁକି ? ସିଗ୍‌ମଣ୍ଡ ଫ୍ରଏଡ୍‌ ଏହାର ଏକ ଅଦ୍ଭୁତ ଉତ୍ତର ଦେଇଛନ୍ତି । ମଣିଷ ମନରେ ଯେଉଁ ସବୁ ଅତୃପ୍ତ ଓ ଅବରୁଦ୍ଧ କାମନା ରହିଥାଏ, ସେଗୁଡ଼ିକ ବାସ୍ତବ କ୍ଷେତ୍ରରେ ତୃପ୍ତି ଲାଭରୁ ବଞ୍ଚିତ ହୋଇ ସ୍ୱପ୍ନ ଆକାରରେ କଳ୍ପନାମୂଳକ ତୃପ୍ତି-ବିଧାନ କରନ୍ତି । ମଣିଷର ବିବେକ ଅସାଧ୍ୟ ତୀବ୍ର କାମନାମାନଙ୍କୁ ଅବରୁଦ୍ଧ କରି ରଖେ । ମଣିଷ ଜାଗ୍ରତ ଥିବାଯାକେ ତାହାର ମାନସିକ ବିବେକ ମଧ୍ୟ ଜାଗ୍ରତ ଥାଇ ଅବରୁଦ୍ଧ କାମନାମାନଙ୍କର ପ୍ରହରୀସ୍ୱରୂପ କାର୍ଯ୍ୟ କରେ । ନିଦ୍ରାରେ ବିବେକରୂପୀ ପ୍ରହରୀ ଢୋଳାଇ ପଡ଼େ ; ଏହି ଅବସରରେ ଅତୃପ୍ତ କାମନାମାନେ ମନର ଅଜ୍ଞାତ ଓ ରୁଦ୍ଧ ପ୍ରକୋଷ୍ଠରୁ ବାହାରି ଆସି ନାନାବିଧ ଛଦ୍ମବେଶରେ ନୈଶ ଅଭିନୟର ଆରମ୍ଭ କରନ୍ତି । ଅଧିକାଂଶ ସ୍ୱପ୍ନ ବା ନୈଶାଭିନୟ ସାଧାରଣତଃ ମିଳନାତ୍ମକ (Comedy) ; ଏଣୁ କୌଣସି କୌଣସି ସ୍ୱପ୍ନ କରୁଣ ହେଲେ ମଧ୍ୟ ଶେଷରେ ତାହା ମିଳନରେ ପରିଣତ ହୁଏ । କେତେକ ସ୍ୱପ୍ନରେ ଭୟଙ୍କର ଦୃଶ୍ୟ, ଭୀତିପ୍ରଦ ଦୃଶ୍ୟ ଓ ଅଦ୍ଭୁତ ଦୃଶ୍ୟ ଥିଲେ ମଧ୍ୟ ଶେଷରେ ତାହା ମିଳନରେ ପରିଣତ ହୁଏ । ଅଧିକାଂଶ ସ୍ୱପ୍ନରେ ଶିଶ୍ନୋଦ୍ରେକ ବା ବୀର୍ଯ୍ୟସ୍ଖଳନ ଘଟେ । ଏଣୁ ପ୍ରତ୍ୟେକ ସ୍ୱପ୍ନ ଊଣା ଅଧିକେ ରମଣାତ୍ମକ (Sexual) । ସମ୍ପୂର୍ଣ୍ଣ ଶକ୍ତିହୀନ ବା ବୃଦ୍ଧବ୍ୟକ୍ତି ଜାଗରଣବେଳେ ରମଣକ୍ରିୟାରେ ସମ୍ପୂର୍ଣ୍ଣ ଅସମର୍ଥ ହେଲେ ମଧ୍ୟ ନିଦ୍ରାରେ ତାହାର ଶିଶ୍ନୋଦ୍ରେକ ଘଟେ ଏବଂ

ତରଳ ବୀର୍ଯ୍ୟପାତ ଘଟେ । ଦୁଇ ତିନିବର୍ଷ ବୟସର ଶିଶୁଟିଏ ଶୋଇଥିବାବେଳେ କନ୍ଦର୍ପର ଏହି ଗୋପନଲୀଳା ବେଳେ ବେଳେ ଲକ୍ଷିତ ହୁଏ ।

କୌଣସି ପ୍ରବଳ କାମନାର ଅବରୋଧ ଏବଂ ଅତୃପ୍ତି ଘଟିଲେ ରାତିରେ ଅନେକବେଳଯାଏ ନିଦ୍ରା ହୁଏ ନାହିଁ । ପ୍ରବଳ ଉତ୍ତେଜନା-ବଶତଃ ଲୋକେ ବିନିଦ୍ର ଯାମିନୀ ଯାପନ କରନ୍ତି ; ଅବରୁଦ୍ଧ, ଅତୃପ୍ତ କିମ୍ବା ତୃପ୍ତିଲାଭପ୍ରୟାସୀ ପ୍ରବଳ ଇଚ୍ଛାହିଁ ଉତ୍ତେଜନା ସୃଷ୍ଟି କରି ନିଦ୍ରାର ବ୍ୟାଘାତ କରେ ଏବଂ ନାନାବିଧ ଶାରୀରିକ ଓ ମାନସିକ ବିକୃତିର ସଞ୍ଚାର କରେ । ପ୍ରବଳ ଉତ୍ତେଜନାରୁ ନିଦ୍ରାର ବ୍ୟାଘାତ ଘଟିଲେ ମଣିଷ ନାନାପ୍ରକାର ଜାଗ୍ରତ୍ ସ୍ୱପ୍ନରେ ( Day Dream ) ଲିପ୍ତ ହେବାକୁ ବାଧ୍ୟ ହୁଏ । ଜାଗ୍ରତ୍ ସ୍ୱପ୍ନ ମଧ୍ୟ ଅବରୁଦ୍ଧ ଇଚ୍ଛାର ଏକପ୍ରକାର ଅଭିନୟ ; ମାତ୍ର ଏହା ଗୋପନ ଅଭିନୟ ନୁହେଁ ; ଯେଣୁ ଜାଗ୍ରତ ଅବସ୍ଥାରେ ବିବେକ ମଧ୍ୟ ଜାଗ୍ରତ ଥାଏ । ଏଣୁ ଜାଗ୍ରତ ସ୍ୱପ୍ନର ଅଭିନୟଟିକୁ ବିବେକ ଯେପରି କି ଅନୁମୋଦନ କରେ । ମାତ୍ର ନିଦ୍ରାବେଳେ ଅବରୁଦ୍ଧ କାମନାମାନେ ଯେଉଁ ଅଭିନୟ କରନ୍ତି, ସେ ଅଭିନୟ ସବୁ ବିବେକର ଅଜ୍ଞାତସାରରେ କରାଯାଏ; ଏଣୁ ନିଦବେଳେ ଜାଗି ଉଠିଲାକ୍ଷଣି ସ୍ୱପ୍ନର ଅଭିନୟଟା ମଧ୍ୟ ହଠାତ୍ ବନ୍ଦ ହୋଇଯାଏ ; ଗୋପନ ଅଭିନୟକାରୀ ଅବରୁଦ୍ଧ କାମନାମାନେ ବିବେକ ଡରରେ ତରବର ହୋଇ ଯେପରି କି ବେଶଘରକୁ ପଳାଇ ଯାଆନ୍ତି ।

ଅଭିନୟକାରୀର ଅତୃପ୍ତ ଇଚ୍ଛା ଯେପରି ଗୋପନବେଶରେ ଅଭିନୟ କରନ୍ତି, ସେମାନଙ୍କର ଅଭିନୟକାର୍ଯ୍ୟ ମଧ୍ୟ ସେହିପରି ସାଙ୍କେତିକ ଓ ଅନ୍ୟାର୍ଥସୂଚକ (Symbolic) ; ଦୃଶ୍ୟମାନ ମଧ୍ୟ

ଅନ୍ୟାର୍ଥଜ୍ଞାପକ ଓ ସାଙ୍କେତିକ । ସିଗ୍‌ମଣ୍ଡ ଫ୍ରଏଡ଼ଙ୍କ ମତରେ ପହଁରିବା ବା ଉଡ଼ିବାର କାର୍ଯ୍ୟ ରମଣାର୍ଥକ । ସ୍ୱପ୍ନରେ ରଜା ବା ରାଣୀର ଦୃଶ୍ୟ ପିତା ବା ମାତାକୁ ସୂଚନା କରେ । ଦାନ୍ତସବୁ ଝଡ଼ିପଡ଼ିବାର କିମ୍ବା ହସ୍ତମୈଥୁନସୂଚକ ୀ ଗର୍ତ୍ତ, ଖୋଲାଗୃହ, ଡାଲା ଇତ୍ୟାଦିର ଦୃଶ୍ୟ ଯୋନିଅର୍ଥଜ୍ଞାପକ; ମାତ୍ର ସର୍ପ, ଦଣ୍ଡ ଇତ୍ୟାଦି ଲମ୍ବ ପଦାର୍ଥର ଦୃଶ୍ୟ ଶିଶ୍ନଜ୍ଞାପକ । ଅବରୁଦ୍ଧ ଇଚ୍ଛାମାନେ ଯେ ଗୋପନ ବେଶ, ସାଙ୍କେତିକ ଅଭିନୟ କାର୍ଯ୍ୟ ଓ ସାଙ୍କେତିକ ଦୃଶ୍ୟମାନଙ୍କର ବ୍ୟବହାର କରନ୍ତି, ତାହା କେବଳ ବିବେକରୂପୀ ପ୍ରହରୀର ଭୟରେ । ଫ୍ରଏଡ଼ଙ୍କ ମତରେ କୌଣସି ବ୍ୟକ୍ତି ସ୍ୱପ୍ନରେ ଯେତେବେଳେ ବିଳାପ କରି କ୍ରନ୍ଦନ କରେ, ବୁଝିବାକୁ ହେବ ଯେ, ହଠାତ୍ ଜାଗି ଉଠିଥିବା ବିବେକ କୌଣସି ଛଦ୍ମବେଶୀ ଅଭିନୟକାରୀ ଇଚ୍ଛାକୁ ଧରି ପକାଇଛି ; ଏହି ଇଚ୍ଛାଟି ଏତେ ସାଂଘାତିକ ଓ ଅଶ୍ଳୀଳ ଯେ ଏହାର କୌଣସି ପ୍ରକାର ତୃପ୍ତିରେ ବିବେକର ସମ୍ପୂର୍ଣ୍ଣ ଧ୍ୱଂସ ଅନିବାର୍ଯ୍ୟ ।

ପ୍ରତ୍ୟେକ ବ୍ୟକ୍ତିର ମନର ଅଜ୍ଞାତ ଓ ଗୁପ୍ତ ପ୍ରକୋଷ୍ଠରେ ଅନେକ ଅତୃପ୍ତ ଓ ଅବରୁଦ୍ଧ କାମନା ଛପି ରହିଥାନ୍ତି । ସ୍ୱପ୍ନ ଆକାରରେ ଏହି ଅତୃପ୍ତ କାମନାମାନଙ୍କର ଗୋପନ ଅଭିନୟ ଓ କଥଞ୍ଚିତ୍ ତୃପ୍ତି ଘଟୁ ନ ଥିଲେ ମଣିଷର ଜମାରୁ ନିଦ ହେଉ ନ ଥାନ୍ତା । କୌଣସି ବ୍ୟକ୍ତିର ଯଦି କ୍ରମାଗତ ଦୀର୍ଘ ସମୟ ଧରି ନିଦ ନ ହୁଏ, ତେବେ ସେ ଏକାବେଳକେ ପାଗଳ ହୋଇଯାଏ କିମ୍ବା ତାହାର ଜୀବନ ଅନ୍ୟ କୌଣସି ଭାବରେ ସଙ୍କଟାପନ୍ନ ହୁଏ ।

ପ୍ରବଳ କାମନାମାନଙ୍କର ଅବରୋଧ ଓ ଅତୃପ୍ତି ଘଟିଲେ ଦୁଇପ୍ରକାର ଅବସ୍ଥା ଉପୁଜେ । ହୁଏ ତ ନିଦ ଜମାରୁ ହୁଏ ନାହିଁ,

ଏଣୁ ଉନ୍ମାଦ (Insanity) ଘଟେ ବା କୌଣସି ମାରାତ୍ମକ ବ୍ୟାଧି ଜୀବନର ଧ୍ୱଂସ କରେ ; ନ ହେଲେ ନିଦ ଅତି ସାମାନ୍ୟ ହୁଏ ବା ଯେଉଁ ନିଦ ହୁଏ, ସେ ନିଦଟି କେବଳ ସ୍ୱପ୍ନମୟ ହୁଏ । ଉନ୍ମାଦ ଓ ସ୍ୱପ୍ନମୟ ନିଦ୍ରା ( Dreamy Sleep ) ଯୋଡ଼ିକଯାକ ପ୍ରବଳ ମାନସିକ ବିକୃତିର ପରିଚାୟକ । ବ୍ୟକ୍ତିବିଶେଷର ନିଦ୍ରା ସ୍ୱପ୍ନମୟ ହେଲେ, ସେ ଦିନସାରା ଢୋଳାଏ ; କୌଣସି କାର୍ଯ୍ୟ ସୁଚାରୁରୂପେ କରି ପାରେ ନାହିଁ । ଗୋଟିଏ 'କାର୍ଯ୍ୟ କରିବାକୁ ଗଲେ ତାହାର ଦୀର୍ଘ ସମୟ ଅତିବାହିତ ହୁଏ । ସେ ଖାଉ ଖାଉ ଭାତଥାଳି ପାଖରେ ବସିବା ଅବସ୍ଥାରେ ଘଡ଼ିଏକାଳ ଶୋଇଯାଏ ; ସ୍ତ୍ରୀ ଥାଳି ମାଜୁ ମାଜୁ ବା ଘର ଲିପୁ ଲିପୁ ଶୋଇଯାଏ ; ହାତରେ ତାହାର ଅଇଁଠା ଥାଳି ବା ଝୁଞ୍ଚ କନାଝାଡ଼ା ଧରି ହୋଇଥାଏ । ସ୍ତ୍ରୀ ଚୁଲିପାଖରେ ବସି ରାନ୍ଧୁ ରାନ୍ଧୁ ବସିବା ଅବସ୍ଥାରେ ଶୋଇଯାଏ ।

ଛାତ୍ର ବହିରେ ଆଖି ଦେବାମାତ୍ରେ ଘମାଘୋଟ ନିଦ ଆସେ । ହାତରେ ତାହାର ବହିଟା ପଢ଼ିବା ଅବସ୍ଥାରେ ଥାଏ ; ଅଥଚ ବହୁକ୍ଷଣ ହେଲା ସେ ଶୋଇ ପଡ଼ିଲଣି, କାହାରି କି ମାଲୁମ ନାହିଁ । ସେ ତ ବହିକି ଚାହିଁଛି, କିଏ କାହିଁକି ଜାଣିବ, ସେ ଶୋଇଗଲଣି ? ଏହିପରି ଛାତ୍ରର ମାନସିକ ବିକାଶ (intellectual development) ବାଧା ପାଏ । ତାହାର ଶାରୀରିକ ବୃଦ୍ଧି କ୍ଷୀଣ ଏବଂ ବଳ ନିସ୍ତେଜ ହୁଏ । ସେ କ୍ରୋଧଶୀଳ, ଭୟଶୀଳ, ଅଭିମାନୀ, ଜିଦ୍ଦିଖୋର ଏବଂ ଅଭିଯୋଗକାରୀ (of complaining nature) ହୁଏ ।

ସ୍ୱପ୍ନର କେତେଗୁଡ଼ିଏ ବିଶେଷ ବିଶେଷ ଶ୍ରେଣୀ ଅଛି । ଏକ ପ୍ରକାର ସ୍ୱପ୍ନରେ ମଣିଷ ଶୂନ୍ୟରେ ଖୁବ୍ ଉପରକୁ ଉଠେ ; ଏହି ଅବସ୍ଥାରେ ସେ ତଳକୁ ଚାହିଁ ପଡ଼ିଯିବାର ଆଶଙ୍କାରେ ଆତଙ୍କିତ ହୁଏ । ସେ ଭାବେ ଯେ ସେ ଗୋଟାଏ ଜନ୍ଦ ନ ଥିବା ବାଙ୍ଗୀ ବା

କୂପ ନିକଟରେ ଠିଆ ହୋଇଛନ୍ତି, ଏଥର ସେ ନିଶ୍ଚୟ କୂପ ମଧ୍ୟରେ ପଡ଼ିଯିବ ; ଏହା ଭାବି ଭୟରେ ତାହାର ଛାତି ଭିତରଟା ଶିର ଶିର ହୋଇ ଉଠେ । ଏହି ଶ୍ରେଣୀର ସ୍ୱପ୍ନକୁ ଅଲାଣିଆ ସ୍ୱପ୍ନ (Night mare) କୁହାଯାଏ ।

ଅନ୍ୟ ଏକ ଶ୍ରେଣୀର ସ୍ୱପ୍ନକୁ ପ୍ରଳାପ ବା ବକାବକେଇବା (Delirium) କୁହାଯାଏ । ଶୋଇଥିବା ବ୍ୟକ୍ତି ନିଦରେ ଚିତ୍କାର ବା କନ୍ଦନ କରେ—ଅନ୍ୟକୁ ଗାଳିଦିଏ ।

ଅନ୍ୟ ଏକ ଶ୍ରେଣୀର ସ୍ୱପ୍ନକୁ ସନିଦ୍ର ଭ୍ରମଣ (Sleep walking, Somnabulism) କୁହାଯାଏ । ଶୋଇଥିବା ବ୍ୟକ୍ତି ନିଦବାଉଳାରେ ଉଠି ନାନା ସ୍ତରର କୌଣସି ଆଚରଣ ପ୍ରକାଶ କରେ । ଗୁହଗାଇ କଣ୍ଠା ତାଆଣୀ ଏହି ପ୍ରକାର ସ୍ୱପ୍ନବିକୃତିଗ୍ରସ୍ତ ।

---

# ପଞ୍ଚଦଶ ପରିଚ୍ଛେଦ

## ମାଦକ ସେବନ (Narcotic habits)

କେତେକ ଲୋକ ଅଛନ୍ତି ସେମାନେ କୌଣସି ନା କୌଣସି ମାଦକ ଦ୍ରବ୍ୟର ଦାସ । ଗଞ୍ଜା, ଅଫିମ, ଭାଙ୍ଗ, ସରାପ, ଭାଙ୍ଗ ପ୍ରଭୃତି ମାଦକ ଦ୍ରବ୍ୟକୁ କେହି କେହି ଖୁବ ଅଧିକରେ ସେବନ କରନ୍ତି । ମଣିଷ ଯେଉଁ କାରଣରୁ ମାଦକ ଦ୍ରବ୍ୟ ସେବନ କରିବାକୁ ଭଲ ପାଏ, ସେହି କାରଣକୁ ପର୍ଯ୍ୟାଲୋଚନା କଲେ ଆମେମାନେ ଦେଖିବା ଯେ ଠିକ ଏହି କାରଣରୁ ତମାଖୁକୁ (Tobaco) ମଧ୍ୟ ଅନେକେ ବ୍ୟବହାର କରନ୍ତି । ଏହି ତମାଖୁକୁ ଜନସାଧାରଣ ମାଦକଦ୍ରବ୍ୟ କହିବାକୁ କୁଣ୍ଠିତ ହେଲେ ମଧ୍ୟ ଆମ୍ଭେମାନେ ପୂର୍ବୋକ୍ତ କାରଣରୁ ଏହାକୁ ମାଦକଦ୍ରବ୍ୟ କହିବୁଁ । ଏହି ପୃଥିବୀର ପ୍ରାୟ ପ୍ରତ୍ୟେକ ବ୍ୟକ୍ତି ତମାଖୁ ବା ତମାଖୁ ପ୍ରସ୍ତୁତ କୌଣସି ଦ୍ରବ୍ୟର ଦାସ; ଗୁଣ୍ଡି, ବିଡ଼ି, ସିଗାରେଟ, ଚୁରଟ, ପିକା, ଗୁଡ଼ାଖୁ, ଜର୍ଦ୍ଦା ପ୍ରଭୃତି ଏହି ତମାଖୁରେ ପ୍ରସ୍ତୁତ ହୁଏ ।

୨

ବିଷାଦ ବା ଅବସାଦରୁ ଅବ୍ୟାହତି ପାଇବାକୁ ଲୋକ ମାଦକ-ଦ୍ରବ୍ୟ ସେବନ କରେ । ପ୍ରସାଦ ଭାବ ଏବଂ ବିଷାଦ ଏ ଯୋଡ଼ିକ ହେଉଛନ୍ତି ମନର ଅବସ୍ଥା । ପ୍ରସାଦ ପ୍ରକୃତିଦତ୍ତ, ମାତ୍ର ବିଷାଦ ମଣିଷର ନିଜ ନିର୍ବୋଧତାପ୍ରସୂତ । ଜନ୍ମରୁ ମୃତ୍ୟୁଯାଏ ମଣିଷ ନାନା ପ୍ରକାର ନିର୍ବୋଧତାର କାର୍ଯ୍ୟ କରେ, ତୃଷ୍ଣାର ଦାସ ହୁଏ, ଏଣୁ ବିଷାଦ ଓ ଅବସାଦର (Depression) ପରିମାଣ ବଢ଼ି ବଢ଼ି ଚାଲି ଥାଏ । ମଣିଷ ଯେତେ ଯେତେ ନିର୍ବୋଧତାର କାର୍ଯ୍ୟ କରେ ସେମାନଙ୍କ ମଧ୍ୟରେ କାମତୃଷ୍ଣାଜନିତ ନିର୍ବୋଧତା ସବୁଠାରୁ ବଡ଼

ଧରଣର ; ଏଣୁ ଅଧିକାଂଶ ଅବସାଦ ବିକୃତବିକୃତ ଏବଂ ଅତ୍ୟଧିକ ଇନ୍ଦ୍ରିୟାସକ୍ତିର ଫଳ (Effects of perverted and over indulged Sexual acts) । ବିଷଣ୍ଣତା ଓ ଅବସାଦ ଯେତିକି ଯେତିକି ବଢ଼େ ପ୍ରସନ୍ନତା ଏବଂ ସ୍ଫୂର୍ତ୍ତି ସେତିକି କମିଯାଏ ଏବଂ କ୍ଷଣସ୍ଥାୟୀ ପ୍ରସନ୍ନତା ଓ ଦୀର୍ଘକାଳସ୍ଥାୟୀ ଅବସାଦର ଅଦଳବଦଳ ହୁଏ, ଅର୍ଥାତ୍ ମଣିଷ ଅଳ୍ପ ସମୟ ପାଇଁ ପ୍ରସନ୍ନ ଦେଖାଯାଏ । ତତ୍ପରେ ତାହାର ଏହି ପ୍ରସନ୍ନତା ଅନ୍ତର୍ହିତ ହୋଇଯାଏ ଏବ ସେ ଦୀର୍ଘ ସମୟ ଧରି ବିଷଣ୍ଣ ଓ ଅବସାଦଗ୍ରସ୍ତ ହୁଏ ।

ଏହି ଦୀର୍ଘ ଅବସାଦ ଓ ବିଷାଦକୁ ଏଡ଼ିବାପାଇଁ ଏବ କୃତ୍ରିମ ସ୍ଫୂର୍ତ୍ତି ଓ ପ୍ରସନ୍ନତାର ସୃଷ୍ଟି କରିବା ପାଇଁ ମାନସିକ ବିକୃତଗ୍ରସ୍ତ ବ୍ୟକ୍ତି ନାନା ପ୍ରକାର ଉପାୟ ଖୋଜି ବୁଲେ । ଅବସାଦକୁ ଘୋଡ଼ାଇ ପକାଇ କୃତ୍ରିମ ସ୍ଫୂର୍ତ୍ତି ସୃଷ୍ଟି କରିବାର ଶକ୍ତି ମାଦକ ଦ୍ରବ୍ୟର ଅଛି । ମାତ୍ର ମାଦକ ଚା, କଫି ଓ ତମାଖୁ ଦ୍ୱାରା ସୃଷ୍ଟ ହେଉଥିବା କୃତ୍ରିମ ସ୍ଫୂର୍ତ୍ତି ଓ ପ୍ରସନ୍ନତା ବେଶୀ ସମୟ ସ୍ଥାୟୀ ହୋଇ ପାରେ ନାହିଁ । ମାଦକର ପ୍ରତ୍ୟକ୍ଷ କିମ୍ବା ସାମାନ୍ୟ ଓ କ୍ଷଣସ୍ଥାୟୀ ସ୍ଫୂର୍ତ୍ତି ଓ ଆନନ୍ଦ ହେଲେ ମଧ୍ୟ ପ୍ରତିକ୍ରିୟା ପୂର୍ବଠାରୁ ଅଧିକତର ଅବସାଦ ଆନୟନ କରେ । ଏଣୁ ମାଦକସେବନକାରୀ ପୂର୍ବଠାରୁ ଅଧିକ ଅଧିକ ମାତ୍ରାରେ ମାଦକ ସେବନ କରିବାକୁ ବାଧ୍ୟ ହୁଏ । ଚିର ଅବମିଶ୍ର ଓ ସ୍ୱାଭାବିକ ଆନନ୍ଦର ଅଧିକାରୀ ହେବାକୁ ହେଲେ ମଣିଷକୁ ନାମସୁଧା ସେବନ କରିବାକୁ ହେବ ; କାମତୃଷ୍ଣାକୁ ଅଧିକରୁ ଅଧିକ ସୀମାବଦ୍ଧ କରିବାକୁ ପଡ଼ିବ ; ନଚେତ୍ ସୁରାର ଆପାତମଧୁରତାରେ ଆସକ୍ତ ହେଲେ ତାହାର କ୍ଷଣିକ ସ୍ଫୂର୍ତ୍ତି ଓ ଆନନ୍ଦ ହେଲେ ମଧ୍ୟ ସେ ଦୀର୍ଘଅବସାଦଗ୍ରସ୍ତ ଓ ଅଳ୍ପାୟୁ ହେବ ।

ଅତ୍ୟଧିକ କାମତୃଷ୍ଣାର (Sexual acts) ପରିତୃପ୍ତି ପରେ ବ୍ୟକ୍ତି ଗଭୀର ଅବସାଦଗ୍ରସ୍ତ ହୋଇପଡ଼େ । ଏହି ଅବସାଦକୁ ଚପାଇ ଦେବା ପାଇଁ ସେ ମାଦକ ସେବନ କରେ । କାମତୃଷ୍ଣାର ତୃପ୍ତିରେ ଅସମର୍ଥ (Impotent) ହୋଇ କୃତ୍ରିମ ଉତ୍ତେଜନା ସୃଷ୍ଟି କରିବା ପାଇଁ କେହି କେହି ମାଦକ ଅଭ୍ୟାସ କରନ୍ତି । ମାଦକ ସେବନର ଅବ୍ୟବହିତ ପରେ ଗୋଟିଏ ପ୍ରବଳ ଉତ୍ତେଜନା ଘଟେ, ଦେହରେ ସ୍ଫୂର୍ତ୍ତି ଓ ବଳ ଆସିଲା ପରି ଜଣାଯାଏ । ମାତ୍ର ଏହାର ପ୍ରତିକ୍ରିୟା ଦୀର୍ଘକାଳ ସ୍ଥାୟୀ ଘୋର ଅବସନ୍ନତା ।

କୈଶୋର ଏବଂ ଯୌବନରେ ଅତ୍ୟଧିକ ଯୌନକ୍ରିୟା ହେତୁ ଘୋର ଅବସନ୍ନଭାବ ଘନ ଘନ ମନକୁ ଆକ୍ରମଣ କରେ । ଏଣୁ ଏହି ବୟସରେହିଁ ଲୋକେ ମାଦକ ଅଭ୍ୟାସ ଆରମ୍ଭ କରନ୍ତି । ଗରିବ ମୂଲିଆ ଶ୍ରେଣୀର ଲୋକେ ଏହି ଅବସାଦକୁ ଏଡ଼ାଇ କଠିନ ପରିଶ୍ରମର ଯନ୍ତ୍ରଣାବୋଧ ନ କରିବା ପାଇଁ ତାଡ଼ି, ମହୁଲି ମଦ୍ୟ ଏବଂ ହାଣ୍ଡିଆ ପ୍ରଭୃତି ବ୍ୟବହାର କରନ୍ତି । ମାତ୍ର ବାରମ୍ବାର ମାଦକସେବନ ଫଳରେ ସେମାନଙ୍କର ପରିଶ୍ରମଶକ୍ତି ହ୍ରାସ ହୋଇଯାଏ, ସେମାନେ ଶେଷରେ କୌଣସି ପ୍ରକାର ଶ୍ରମ କରିବାକୁ ସମ୍ପୂର୍ଣ୍ଣ ଅକ୍ଷମ ହୁଅନ୍ତି ।

ଶୂଳ, ପୁରାତନ କାଶ ପ୍ରଭୃତି କେତେକ ଶାରୀରିକ ରୋଗକୁ ଚପାଇ ଦେବାପାଇଁ କେହି କେହି ଅଫିମ ବା ଅନ୍ୟ କୌଣସି ଉତ୍ତେଜକ ମାଦକ ଦ୍ରବ୍ୟର ଆଶ୍ରୟ ନିଅନ୍ତି । ଏହାର ଫଳ ଏହାହିଁ ହୁଏ ଯେ ଉଗ୍ର ମାଦକର ପ୍ରଭାବରୁ ରୋଗଟି ଚପି ଯାଏ; ମାତ୍ର ଏହି ଉଗ୍ର ମାଦକର ବିପକ୍ରିୟା ଜୀବନୀଶକ୍ତିକି କ୍ଷୀଣ ଓ ନିସ୍ତେଜ କରିଦିଏ ଏବଂ ଏହାର ଫଳରେ ଯେଉଁ ନୂତନ ବ୍ୟାଧିର ଉଦ୍ଭବ ହୁଏ ତାହା ଅସାଧ୍ୟ ଏବଂ ତାହା ଆଉ କୌଣସି ପ୍ରକାର ମାଦକ

ସେବନରେ ଚପିଯାଏ ନାହିଁ । ସେହି ବ୍ୟାଧିକୁ କୌଣସି ପ୍ରକାର ଔଷଧ ସାମୟିକ ଉପଶମ ବା ନିରାମୟ କରି ପାରେ ନାହିଁ ।

ତାହେଲେ ଆମ୍ଭେମାନେ ଦେଖିଲେ ଯେ ଅବସନ୍ନଭାବ ଓ ବ୍ୟାଧି-ଯନ୍ତ୍ରଣାକୁ ଘୋଡ଼ାଇ ପକାଇବାକୁ ବା କୃତ୍ରିମ ପ୍ରସନ୍ନତା ଓ ସ୍ଫୁର୍ତ୍ତିର ସୃଷ୍ଟି କରିବାକୁ ଲୋକେ ମାଦକଦ୍ରବ୍ୟର ଆଶ୍ରୟ ନିଅନ୍ତି ଏବଂ ମାଦକ ସେବନର ମୂଳରେ ଅତ୍ୟଧିକ ଯୌନକ୍ରିୟାର ପରିଣତି ବା ଅତ୍ୟଧିକ ଯୌନଶକ୍ତିର ଆକାଙ୍କ୍ଷା ରହିଅଛି । ଏହି ମାଦକ ସେବନର ଶେଷ ପରିଣତି ନପୁଂସକତା (Impotency) ଘୋର ଅବସନ୍ନତା ଆକ୍ରମଣକାରୀ ରୋଗର ଅସାଧ୍ୟତା ଏବଂ ହୃତପିଣ୍ଡ କ୍ରିୟାର ଦୁର୍ବଳତା ।



ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ ବିଶ୍ୱବିଦ୍ୟାଳୟ ପ୍ରେସରେ ଶ୍ରୀ ବଧୂଭୂଷଣ ମିଶ୍ରଙ୍କ ଦ୍ୱାରା ମୁଦ୍ରିତ—୧୯୫୩

ମୁଦ୍ରାକର
ଶ୍ରୀ ବଧୂ ଭୂଷଣ ମିଶ୍ର
ମହାରାଜା ଶ୍ରୀରାମଚନ୍ଦ୍ର
ଉତ୍କଳ ୟୁନିଭର୍ସିଟି ପ୍ରେସ,
କଟକ